# ଜଣାଣ ପ୍ରେମ ସାଗର



ଶ୍ରୀ ଅଭିରାମ ପରମହଂସ

Digitized by PPRACHIN, SOA

# ଜଣାଣ ପ୍ରେମ ସାଗର



ପ୍ରଣେତା

ଜଗଦ୍‌ଗୁରୁ ଠାକୁର

ଶ୍ରୀ ଶ୍ରୀ ଅଭିରାମ ପରମହଂସ ଦେବଙ୍କ

Digitized by PPRACHIN, SOA

ସର୍ବସ୍ୱତ୍ୱ ସଂରକ୍ଷିତ



— ପ୍ରକାଶକ —

# ଶ୍ରୀ ଗୁରୁ ଭଣ୍ଡାର
# ଶ୍ରୀ ଶାନ୍ତ ଆନନ୍ଦାଶ୍ରମ

ପୋଷ୍ଟ :- ଶାନ୍ତଧାମ, ଜି :- ପୁରୀ

ମୁଦ୍ରଣ:- ଶ୍ରୀ ଅଭିରାମ ପ୍ରିଣ୍ଟର୍ସ, (ଦଗପହଣ୍ଡି)

ଅଷ୍ଟମ ସଂସ୍କରଣ:- ୧୯୯୮ (ଶ୍ରୀ ଶ୍ରୀ ଠାକୁରଙ୍କ ଜନ୍ମୋତ୍ସବ)

ମୂଲ୍ୟ— ପାଞ୍ଚ ଟଙ୍କା ମାତ୍ର

ମୂଲ୍ୟ— ଟ ୫-୦୦

Digitized by PPRACHIN, SOA

# ସୂଚୀପତ୍ର



Digitized by PPRACHIN, SOA

Digitized by PPRACHIN, SOA

# ଶ୍ରୀ ଅଭିନ୍ନ ସୁନ୍ଦର କୀର୍ତ୍ତି

## ଶ୍ରୀଗୁରୁ ଗାୟତ୍ରୀ

ଓଁ କ୍ଲୀଂ ଗୁରୁଦେବାୟ ବିଦ୍ମହେ ପ୍ରେମଦାତାୟୈ ଧୀମହି
ତନ୍ନୋଗୁରୁ ପ୍ରଚୋଦୟାତ୍ ।
ଓଁ କ୍ଲୀଂ ଗୁରୁଦେବାୟ ପ୍ରେମଦାତାୟୈ ନମଃ ।

## କରୁଣା ପ୍ରେମ ସାଗର

❊ ❊ ❊ ❊

## ଶ୍ରୀ ଗୁରୁ ସ୍ତବ

ଗୁରୁକୃପା ହିଁ କେବଳ ଭରସା ଏଥି ॥ ଘୋଷା ॥
ଗୁରୁ ବିଷ୍ଣୁ, ବିଧି ବାମଦେବ ମୋର
ଗୁରୁ ପରଂବ୍ରହ୍ମ ପରଂଧାମ ସାର
ଗୁରୁ ସର୍ବସ୍ୱ ମୋ ଅନ୍ୟ ନାହିଁ କେହି ॥ ୧ ॥

ନିରାକାର ନିରଗୁଣ ଗୁରୁ ମୋର ।
ଅଖଣ୍ଡରେ ପୂରିଛନ୍ତି ଚରାଚର
ଶିଷ୍ୟବତ୍ସଳ ହୁଅନ୍ତି ଦୟା କରି ॥ ୨ ॥

ଜନନୀ ଗର୍ଭରୁ ଗୁରୁ ତୁମ୍ଭେ ମୋର
ଏବେ ସେହି ଗୁରୁ ନିତ୍ୟ ନିରାଧାର
ତାଙ୍କ ଧନ ଅକିଞ୍ଚନ କର ସାହି ॥ ୩ ॥

Digitized by PPRACHIN, SOA

ହୃଦ-ସରୋଜ ମିହିର ଗୁରୁ ମୋର,
ମୂହିଁ ଶକ୍ତି ଶକ୍ତିବାନ ! ଦୟା କର
ତୁମ୍ଭ ଛଡ଼ା ଅନ୍ୟ ମୋର ନାହିଁ କେହି ।। ୪ ।।
ମୋର ଗୁରୁ ତୁମ୍ଭେ ପିତା ଜଗଦ୍ ଗୁରୁ !
ଶ୍ୟାମସୁନ୍ଦର ହେ, ପ୍ରେମ କଳ୍ପତରୁ !
ନାବ ଚଳାଉଛ କର୍ଣ୍ଣଧାର ହୋଇ ।। ୫ ।।
ମୋର ନାଥ ପିତା ତୁମ୍ଭେ ଜଗତର
ଏଣୁ ଜଗନ୍ନାଥ ନାମ ଗୁରୁଙ୍କର,
ପ୍ରାଣର ପ୍ରାଣ ତୁମ୍ଭେ ମୋ ହୃଦବାସୀ ।। ୬ ।।
ଗୁରୁ ଜନକ ଜନନୀ ପୌର୍ଣ୍ଣମାସୀ
ଗୁରୁ ମୋ ହୃଦ-କୁମୁଦ-ପୂର୍ଣ୍ଣଶଶୀ
କୃତାଞ୍ଜଳି ପୁଟେ ଜଣାଉଛି ବାଇ ।। ୭ ।।

# ଶ୍ରୀ ଗୁରୁ ସ୍ତବ

( ୧ )

ଜୟ ଜୟ ଗୁରୁ ସତ୍ୟ-ନାରାୟଣ
ଜୟ ତୁ ଅନାମ ମହାଜନ ।
ଭକ୍ତର ଜଞ୍ଜାଳ ନ ବୁଝିବ ଯେବେ
କପାଇଁ ବହିବ ସୁଦର୍ଶନ ? ।। ୧ ।।
ପ୍ରଦ୍ୟୁମ୍ନ ପୁତ୍ରକୁ ଚକ୍ରେ ବଧ କଲୁ
ତେଣୁ ତୋ ହସ୍ତୁ କ ଗଲ ଖସି ?

Digitized by PPRACHIN, SOA

ଆଜ୍ଞାପାଏ କି ଭରକୁ ନ ଆଣିବ ?
କହ୍ନଲେ ଲୁଣ୍ଠୁବ ଦମ୍ଭି ଦସି ॥ ୨ ॥
ଆଣ ଆଣ ହରି ସୁଦର୍ଶନ ଚକ୍ର
କମ୍ପା କରୁଛ ନଷ୍ଟରେ ହେଳା ?
ତୋର ହସ୍ତ ଯେଣୁ ଚକ୍ର ନ ରହିଲ
ଭକ୍ତଙ୍କର ବୁଡ଼ୁଅଛି ଭେଳା ॥ ୩ ॥
ଆହେ ଚକ୍ରଧର ! ଚକ୍ର ହସ୍ତେ ଧର
ବିଳମ୍ବ ନ କର ନନ୍ଦବଳା ।
କହେ ଅଭିରାମ କଲ୍କିରାମ ହୋଇ
ମ୍ଳେଚ୍ଛ ଦଳଙ୍କ ଦର୍ପ ଦଳା ॥ ୪ ॥



( ୨ )

ରସରାଜ ରାସେଶ୍ୱର ! ଦୁଃଖୀ ସୋଦର !
କରୁଣାକର ।
ଭକ୍ତଗଣ ମନ ଠାରେ ଏତେ ନିଷ୍ଠୁର (ଘୋଷା)
ନାହିଁ ମୋର ଭକ୍ତି ଭାବ, ନ ଜାଣ କି ରମା-ଧବ
ଷଡ଼ ଶତ୍ରୁଙ୍କ କବଳୁ ଦୟାରେ ଉଦ୍ଧର ॥ ୧ ॥
ବୁଦ୍ଧି ବାଟ ମୋର ନାହିଁ କେଉଁଣେ ବା ଯିବ ପଳାଇ ?
ଅନ୍ଧ-ମୂକେ କେଉଁ ଗତି ଦଶା ମୋ ହର ॥ ୨ ॥
ଗର୍ଭ୍ୟା ଏଣୀ ଡାକ ଶୁଣି ଥିଲ ଆହେ ଚକ୍ରପାଣି ?
କି ଅପମାନୁ କୃଷ୍ଣାଙ୍କୁ କଲ ଉଦ୍ଧାର ॥ ୩ ॥

Digitized by PPRACHIN, SOA

ଡାକ ଡାକ ଶୁଖେ କଣ୍ଠ ନ ଜାଣ କି ପୀଡ-ପଡ !
ପାଦାବ୍ଜ ବଢ଼ାଇ ଏଥୁ କର ଉଦ୍ଧାର ॥ ୪ ॥
କହେ ଅଭିରାମ ବାଇ କୃପା କେବେ ଦେବେ ଚାହିଁ
କି କରିବେ ଶତ୍ରୁ ମୋର ? ହେ ଚକ୍ରଧର ॥ ୫ ॥

***

( ୩ )

## କୀର୍ତ୍ତନ

ହେ ରାଧା-ବଲ୍ଲଭ ! ଏ ସଂସାରେ ଲଭ
ତୁମ୍ଭ ବିନା କିଛି ନାହିଁ ।
ମଦନ ମୋହନ- ବଦନ ଛବିକି
ଯେତେବେଳେ ଦେଖି ଚାହିଁ ॥
ନବୀନ-ଘନ-ସୁନ୍ଦର ବରଣ !
କେକୀ-ପୁଚ୍ଛ-ଚୂଳ କେଡ଼େ ଶୋଭନ !
ସୁବର୍ଣ୍ଣ ରୁଚିରାମ୍ବର କି ଶୋଭା !
ଦେଖି ତୋତେ କେ ନୋହିବ ଲୋଭା ?
ବେଣୁ-କରେ କଙ୍କଣ ବାଜଇ
ଗମ୍ଭୀର ହାସ ମୋ ମନ ମୋହଇ ॥ ୧ ॥
ଯେତେବେଳେ ଗୋପ- ପୁରେ ଖେଳୁଥିଲ
ଗୋଠି ଗୋପାଳ ସଙ୍ଗରେ
ଯେତେ ଲୀଳା କଲ କେ କହି ପାରିବ ?
ଗୋପୀ ମେଳେ ହେଲ ଚୋର,
ଗୋପ-ଙ୍ଗନାଏ ବୁଦ୍ଧି ଏଠାରେ ନାହିଁ,
ସାଧୁ ବୁଦ୍ଧି କେମନ୍ତେ ଏଥି ହୁଅଇ ।

Digitized by PPRACHIN, SOA

ଭକ୍ତ ଗଣ ସଙ୍ଗେ ହୋଇଛ ବାଇ ।
ଭକ୍ତ କ ଧନ ତୁମ୍ଭଙ୍କୁ ଦଅଇ ॥ ୨ ॥
ଶ୍ୱେତ, ହରିତ, ପୀତ ବର୍ଣ୍ଣ ମିଶିଲା
ଲୋହିତ ମାନ ସଙ୍ଗର ।
ଏହି ପଞ୍ଚ ସଖା ମଧ୍ୟରେ ବିଜୟ
କରିଅଛ ବଂଶୀଧର !
ଷୋଳ ସହସ୍ର ଗୋପୀ ସଙ୍ଗେ କେଳି
କରୁଅଛ ଆହେ ବିପିନ-ମାଳି !
ରାଧାବଲ୍ଲଭ ଯୁଗଳ ମୂରତି,
ଜୀବ ପରମ ସ୍ୱରୂପେ ଥାଆନ୍ତି
ଭିନ୍ନ କମ୍ପା ହୋଇଛ ଭବଗ୍ରାହୀ ?
ରାଧାଙ୍କୁ ଅଙ୍ଗେ କ ଅଛ ଲୁଚ୍ଛଇ ॥ ୩ ॥

ହେ ଭକତ-ପ୍ରିୟ ! ପ୍ରଭୁ ଦୟାମୟ
ରାଧା-ବଲ୍ଲଭ ହୋଇଛ,
ଗୋପୀ-ଜନ-ବଲ୍ଲଭ କେମନ୍ତେ ହୋଇଲ,
ମୋ ବଲ୍ଲଭ କମ୍ପା ନୋହୁଛ ?
ଯେବେ ପ୍ରଭୁ କେମନ୍ତେ ଗୋପ ଛାଡ଼ିଲ ?
ସର୍ବ ଘଟେ ଘଟେ କେମନ୍ତେ ରହିଲ ?
ଅଙ୍ଗକୁ ଦେଇଅଛି, ପ୍ରଭୁ ! ନଅ,
ଜୀବର ବଲ୍ଲଭ ପରମ ହୁଅ,
ଭବେ କହଇ ଅଭିରାମ ବାଇ,
ଢଳ ଢ଼ଳ ଆସ ବଂଶୀ ବଜାଇ ॥ ୪ ॥

Digitized by PPRACHIN, SOA

( ୪ )

ମୋତେ ପଞ୍ଚପ୍ରାଣ ଦାନ, ନାରାୟଣ କରୁଁ ନାହିଁ କେ ଆନ ହେ
ପଦ୍ମନୟନ ! ନ ଜାଣ କି ମୋର ମନ ॥ ୧ ॥
ମୁହିଁ ଅକର୍ମା ହୋଇଛ, ଯେ କର୍ମ ଦେଇଅଛ ଭବଗ୍ରାହୀ ହେ
ତୁମ୍ଭ କର୍ମରେ, କର୍ତ୍ତା ହୋଇଅଛି ମୁହିଁ ॥ ୨ ॥
ତୁମ୍ଭ କର୍ମ ମୁହିଁ କରେ, କି ଫଳ ଫଳିବ ଜାଣି ନ ପାରେ ହେ
ଶ୍ରୀ ନାରାୟଣ ! ଅର୍ପଣ ତୋ ପ୍ରୀତ୍ୟର୍ଥରେ ॥ ୩ ॥
ନ ଜାଣେଁ ଶ୍ରୀମାଧବ ! ଯାହା ଦେଇଥିବ କମଳା ଧବ ହେ
ଲକ୍ଷ୍ମୀ-ବଲ୍ଲଭ ! ସେହିପରି ନେଉଥିବ ॥ ୪ ॥
ଏତିକି ମୁହିଁ କହୁଛି, ତୁମ୍ଭ ହସ୍ତେ ସିନା ସବୁ ରହିଛି ହେ
ଶ୍ରୀ ନାରାୟଣ ! କର୍ତ୍ତବ୍ୟ ମୋ ନାହିଁ କିଛି ॥ ୫ ॥
କହେ ଅଭିରାମ, ଆସି ନାରାୟଣ ! ଦଅ କୃପା ବରଷି ହେ
ଫଳ ଭୁଞ୍ଜିବ, ଆନନ୍ଦେ ହେଉ ତୋ ତୃପ୍ତି ॥ ୬ ॥

-※-※-

( ୫ )

ଦାସ ଦୋଷ ନ ଧର ହେ, ମୋର ପ୍ରାଣନାଥ
ଯନ୍ତ୍ରୀ ନ ବଜାଇଲେ କି ବାଜିପାରେ ଯନ୍ତ୍ର ? (ଘୋଷା)
ଅକର୍ମା-ଦାସ ବୋଲାଅ, ତୁମ୍ଭେ ପ୍ରଭୁ ନେତ !
ଦେବ ଯାହା ନେବ ତାହା, ମୁଁ ନିମିତ୍ତ ମାତ୍ର ॥ ୧ ॥
ମୁଁ ତୁମ୍ଭର ଆଜ୍ଞାକାରୀ ତୁମ୍ଭେ ମୋ ସାମନ୍ତ,
ତୁମ୍ଭେ ମୋର ତାତ ସିନା, ମୁଁ ତୁମ୍ଭର ସୁତ ॥ ୨ ॥

Digitized by PPRACHIN, SOA

ସ୍ତ୍ରିଶ୍ଚ ଯଦ୍ଦ ଦୋଷୀ ହୁଏ କ୍ଷମା କରେ କାନ୍ତ
ଦାସ ଯଦ ଦୋଷୀ ହେବ, ଈଶ୍ୱର ଅନନ୍ତ ॥ ୩ ॥
ପୁତ୍ର ଦୋଷ କଲେ, କୋପ କରଇ କି ମାଉ
କୋଳରେ ଧରିବା ପିତା ଜନନୀ ସମର୍ଥ ॥ ୪ ॥
ଯଦ୍ଦ ତୁମ୍ଭେ ସବୁସଦ୍ଦ ନୋହିବ ଅଚ୍ୟୁତ,
ଏ ଜୀବନେ ଆଶା ନାହିଁ, ଏହି ସତ୍ୟ ସତ୍ୟ ॥ ୫ ॥
କହେ **ଅଭିରାମ** ମୁହିଁ ତୁମ୍ଭର ଆଯୁତ୍ତ,
ନନ୍ଦଘୋଷ ବାହ୍ବାକୁ ତୁମ୍ଭେ ସମରଥ ॥ ୬ ॥

୦-*-୦

( ୭ )

ମଦନ-ଧର ହେ ସୁନ୍ଦର ମୂରତି !
ମଦାକ୍ଷ ନାଶ ମୋ ହୃଦପୁର ପତି ॥ ୧ ॥
ମନାସୁଛୁ ବସି ମନେ ମନେ ଯାହା
ମନାକ ରଖ ହେ ମୋତେ କର ଦୟା ॥ ୨ ॥
ମହିମା ସାଗର ମହାମାୟା ନାଥ !
ମରଷଣ ନୁହେଁ କଣାଉଛୁ ଭ୍ରତ୍ୟ ॥ ୩ ॥
ମାର୍ଗେ କି ଅମାର୍ଗେ ପ୍ରୟାଣ ମୋହର !
ମଧୁହାଣ୍ଡି ଜାଣ ପାତଶ ରହ୍ବ ମୋର ॥ ୪ ॥
ମାଳା ଜପୁଅଛୁ ମାଳା ନାହିଁ ଧରି ।
ମଗ୍ ଘରେ ଯାଇ ଅଛୁ କଥା କରି ॥ ୫ ॥
ମାମୁଁ ଘରେ ଖାଇ ରୋଗୀ ହେଲ ମୁହିଁ ।
ମାମୁଁ-ଭଗ୍ନୀ ପତି ସବୁ ପାଅ ନେଇ ॥ ୬ ॥

Digitized by PPRACHIN, SOA

ମୋତେ ନ ମିଳୁ ହେ ଭୁଞ୍ଜିବାକୁ କଛୁ ।
ମନର କଥା ମୁଁ ଫିଟାଇ କହୁଛୁ ॥ ୭ ॥
ମାମୁଁ ପୂଅକୁ ମୋ ଦଣ୍ଡ କର ମୋତେ ।
ମୁକତ କାମୀ ମୁଁ ନୁହଁଇ ଯୁକତେ ॥ ୮ ॥
ମାୟାଧର ଫଣ ଅଟ ବାୟାପତ ।
ମାଗେ ଅଭିରାମ ନର୍ମଳ ଭକତ ॥ ୯ ॥

( ୭ )

## ❋ କୀର୍ତ୍ତନ ❋

ହେ ସାରଙ୍ଗ-ଧାରୀ ! କାନନ-ବିହାରୀ
ତୁମ୍ଭେ ଏ ସଂସାର ସାର ।
ତୁମ୍ଭ ବିନା ପ୍ରଭୁ ! ଯେତେ ଏ ବିଷୟ
ସବୁ ଜାଣଇଁ ଅସାର ।
ଧନ, ଦାର, କୁଟୁମ୍ବ ଯେତେ ଛନ୍ତି
ତ୍ରିଗୁଣରେ ମୋତେ ନତ୍ୟ ବାନ୍ଧନ୍ତି
କେବଳ ଏମାନେ ଦିଅନ୍ତି ଦଗା
ଯେଝା ବାଟେ ଯେଝା ହେବେ ଅଲଗା
ସାରଥି ମୋହର ରଙ୍ଗ ଅଧର
ତାଙ୍କ ବିନେ ମୋତେ ଦିଶେ ଅନ୍ଧାର ॥ ୧ ॥
ନୀଳ-ଜୀମୂତ କଳେବର ଯାହାର
କମଳା ଯା'ର ଘରଣୀ ।
ସେହି ପ୍ରଭୁଙ୍କର ଏ ଦେହ ସଂସାର
ଆଗରୁ ବନ୍ଦୀ ହେଲଣି ।
ଆଜ କେଣିକ ଫିକ, ନରହରି !
ଆଇନକୁ ଅଛୁ ହସ୍ତରେ ଧରି

Digitized by PPRACHIN, SOA

ସମର୍ପଣ ଯେବେ ମିଥ୍ୟା ହୋଇବ
ଆଜ କେ କପାଳୁଁ ତୋତେ ଡାକିବ ?
ଲକ୍ଷ ଲକ୍ଷ କେତେ ବୃନ୍ଦ ଡଗର !
ଧରି ବାନ୍ଧି ଦେବ ମନୋରଥର
ଭାବେ କହଇ ଅଭିରାମ ଦାଇ
ଧରି ବାନ୍ଧି ଦେବ ଏଥର ମୁକ୍ତି ॥ ୨ ॥

( ୮ )

ଜୟ ଜୟ ଧର-ଧର ! ଝଳି ମାଜୁଛି ତୋ ରଙ୍ଗ ଅଧର
ରସରାଜ ହେ, ମୁଁ ହେଜୁ ନାମ ଭ୍ରମର ॥ ୧ ॥
ଚନ୍ଦନ-ଚର୍ଚ୍ଚିତ-ତନୁ, କୌସ୍ତୁଭ ଭୂଷଣ ନ ଯାଏ ମନୁଁ
ରସରାଜ ହେ, ଦେଖିଥିଲି ଯେଉଁ ଦିନୁ ॥ ୨ ॥
ନବୀନ ନୀରଦ ଶ୍ୟାମ କିଶୋର ବୟସ ଦହୁଛି ମେଁ
ରସରାଜ ହେ, ସମ ନୁହେଁ କୋଟି କାମ ॥ ୩ ॥
ଯଦି ହେବେ କୋଟି ସୋମ, ବଦନ ଛବିକି ନୋହିବେ ସମ
ରସରାଜ ହେ, ନାମ ତୋର ଅଭିରାମ ॥ ୪ ॥
ସୁମଙ୍ଗଳ ମନ୍ଦହାସ୍ୟ ଦେଖି ଭୁଲିଗଲା ମୋର ମାନସ
ରସରାଜ ହେ, ସଂସାର ଲାଗିଲା ବିଷ ॥ ୫ ॥
ତ୍ରିଭଙ୍ଗ ଭଙ୍ଗିମା ହୋଇ, କି ରଙ୍ଗରେ ବଂଶୀ ଦଣ୍ଡ ବଜାଇ
ରସରାଜ ହେ, ଶୁଣି କେ ନୋହିବ ବାଇ ? ॥ ୬ ॥
କେ ରୂପ ବର୍ଣ୍ଣିବ ତୋର ? ଶେଷାନନେ ଶକ୍ତି ନୋହିବ ଥା'ର
ରସରାଜ ହେ, ଶରଣ ତୁମ୍ଭ ପୟର ॥ ୭ ॥

Digitized by PPRACHIN, SOA

ତୋର ମୋର ଯେ ସମ୍ବନ୍ଧ          ସେବ୍ୟ ସେବକରେ ପଡ଼ିଛି ବନ୍ଧ
ରସରାଜ ହେ, ଜଳରେ ଦେସନେ କଦ ॥ ୮ ॥
ମୋତେ ତୁମ୍ଭେ ଅଛ ଧରି          ମୁଁ ତୁମ୍ଭଙ୍କୁ ଯଦି ପାରନ୍ତି ଧରି
ରସରାଜ ହେ, ଧନ୍ୟା ସୁନାଠା ପରି ॥ ୯ ॥
ତୁମ୍ଭେ ବୁଢ଼ା ବୁଢ଼ୀ ଦୁଇ,          ମିଳନ ଅର୍ଥେ ଜନ୍ମି ଅଛି ମୁହିଁ
ରସରାଜ ହେ, ବେଳ କ'ଣ ହୋଇନାହିଁ ? ॥ ୧୦ ॥
କାଳିଆ ଭ୍ରମର ମୋର,          ମୋ ହୃଦ-ପଦ୍ମରେ ଘର ତୁମ୍ଭର
ରସରାଜ ହେ, ଅଭିରାମ ହୃଦହାର ॥ ୧୧ ॥



( ୯ )

ଅଛି କି ମନେ ତୁମ୍ଭର,          ମୋ ହୃଦ-ହାର !
ପ୍ରଥମ ଦିନ କଥାକୁ ।
ଗୃହ ମୋ ବନେ ଥିଲି          ଦୁଇ ଲୀଳା ଦେଖିଲି,
କୁଞ୍ଜରେ ପଡ଼ି ଦାସ          ଯଦି କାଜଳା ହେଲି,
ପାଞ୍ଚରେ ବସୁଛି କି ?          ହୃଦନାଥଙ୍କୁ ମୋର,
ଏକ ପିଆଅ ତେବେ          ମୁଁ ଯଦି ନୁହେଁ ତୋର,
ହେ ନବ-ଧର-ବୀର-          ଜନକ ! ମୁଁ ତୋ ପଣ,
ବଶ ହୋଇଛି ଯେବେ          ଘାଟକୁ ଦିଅ ଭଣି,
ବାହରେ କହେ ତୁମ୍ଭଙ୍କୁ ॥ ୧ ॥
ତେଣୁ ମୋ ଯୋଡ଼ି ଆସନ,          ହେ ହୃଦ-ସାଇଁ
ଅସ୍ଥିର ମୋହର ନାହିଁ ।

Digitized by PPRACHIN, SOA

ଭିନ୍ନ ହୋଇବ କୋଳ ଯାବୁ ନାହିଁ, ନ ଥିଲା,
ରଜତ ଦେବ ମୋତେ ତୋ ଘରେ ଡାକା କଲା,
ଏଗାର ଦେଇ ମୋତେ ତୁମ୍ଭ ପୀରତି କର୍ମ,
ମୋହିଲେ ଓଁ ନୈବଂଶ ଛେଦନ କର ଶ୍ୟାମ ।
ସହର ବେଳ ମାନ ଆସୁଛି ଘନ ଘନ,
ବୃଷୀକେ ପଦରକୁ ଧର ଦ୍ୟୁମ୍ନ ଗର୍ଜନ
କହିବ ଅନ୍ୟ କାହାକୁ ? ।୨॥
କୋଡ଼ଏ-ଧର-ଅଇର ଧୂଜାଂଘ୍ରି ଧର
ଏକବଂଶକୁ ନ ଧରି,
ଲବଣ-ପଦ ମୂର୍ତ୍ତି ଜଳଦମ୍ବ ମଣ୍ଡଳ
ପଞ୍ଚବଂଶକୁ ମୋର ଚିତ୍ତ ଟଳଇ ନାହିଁ,
ଖାଇଣି କଣ୍ଠରୁ ମୁଁ ତୁମ୍ଭ ନାମ-ରତନ,
ତେଇଶି ତୁମ୍ଭେ ଏକା, ଶୂନ୍ୟ ମୋ ତ୍ରିଭୁବନ
ସପ୍ତବଂଶେ ଜାଣିଲ, ବନ୍ଧୁ ତୁମ୍ଭେ ମୋହର,
କୃଷ୍ଣ ମାର୍ଗେ ନ ନେଇ ଚରଣେ ଅସ୍ତୁ କର ।
ଅଭବମର ପ୍ରୀତିକୁ ॥ ୩ ॥

— ( ※ ) —

( ୧୦ )

ଜୟ ପତିତ-ପାବନ ହେ, ପତିତ ଯାଉଛି ଭାସି ।
ନୀଳାଚଳ-ନାଥ ଲୀଳା କର ପର ଭକତ ହୃଦରେ ପଶି ।
ଦ୍ୱାଦଶ ଗୁଟିକା କଲ ମୂଳୁକା
ଶ୍ରେଷ୍ଠର ପଶିବେଟି ହେ ନନ୍ଦବଳା ।

Digitized by PPRACHIN, SOA

ନର୍ତ୍ତମାଭ ହର କରି ଦେବେ ଦୂର
ତୋ ପୁର ସମ୍ମାନ ଆସି ॥ ୧ ॥
ଦ୍ୱାଦଶ ତାଳକୁ ଏକାଇ କଞ୍ଚି
ଜ୍ଞାନ ସୂତ୍ରେ ଧରି ଧ୍ୟାନେ ମୋଡ଼ୁଛି ।
ଖୋଲୁ ଖୋଲୁ ତାଳ ଅସଜ ହୋଇଲା
ଲୁଚୁଅଛ ହସି ହସି ॥ ୨ ॥
ଷଟ ଚକ୍ର ପଟରେ ଖେଳୁଛ ବସି
କରୁ ଛଡ଼ାଇ ନେଲା କେ ବଂଶୀ ?
ରାଧା ରାଧା ବୋଲି ନ ଡାକେ ମୁରଲୀ
ଧାବ ଧାବ ଝସୁ କେଶୀ ॥ ୩ ॥
ସପ୍ତାଙ୍ଗେ ବଳାଇ ଅଷ୍ଟାଙ୍ଗେ ନାହିଁ
ଷ୍ଟେର ଘର ଏଣେ ତେଣେ ଲୁଗୁଡ଼
ମୃଣାଳ ସୂତ୍ରରୁ ସହସ୍ର ଅଂଶରେ
ସ୍ୱରୂପ ଦେଖାଇ ବସି ॥ ୪ ॥
ଏତେ ସ୍ଥିର ଦୃଷ୍ଟି କାହାର ହେବ
ନଷ୍ଟକ୍ଷଣ କରି ଲକ୍ଷ ବନ୍ଧାବ
ଭକ୍ତେ ଥିବ ଦୃଷ୍ଟି ଉପରକୁ ମୁଷ୍ଟି
ପ୍ରତିବିମ୍ବ ନାଉ ମିଶି ॥ ୫ ॥
ଭକ୍ତ ଭାବେ ତରୁ- ଭର୍ଜ ହୋଇଣ,
ଯେତେଣେ ଚାହିଁଲେ ତେତେଣେ ନାରାୟଣ
କହେ ଅଭିରାମ ଲକ୍ଷ୍ମୀର ନନ୍ଦନ
ଭକ୍ତ ମେଳେ ଥାଉ ବସି ॥ ୬ ॥

Digitized by PPRACHIN, SOA

( ୧୧ )

ଜୟ ଅକର୍ମ-ବନ୍ଧାଣ୍ଡ ହେ କର୍ମ ନ ପାରଇ କରି,
ଅକର୍ମରେ ଯଦ ପ୍ରାପତ ହୋଇଲ· ଏଡ଼େ ସୁବଦ୍ଧା ତୁମ୍ଭର (ଘୋଷା)
କପା ମାକ ଦୂର କଲ, ମନ ଜ୍ଞାନରେ ଉଜ୍ୱଳ ହେ
ଅଜ୍ଞାନ ତୁମ୍ଭଙ୍କୁ ଚିହ୍ନି ନ ପାରନ୍ତି ଜ୍ଞାନକୁ ଉଜ୍ୱଳ ଧରି ॥ ୧ ॥
ଜପ ତପ ନାହିଁ କରି ଜୟ ଅକର୍ମ ବନ୍ଧାଣ୍ଡ ହେ
ଦର୍ଶନ ନ ଦେଲ ଦରଶନ ଦେଲ ମୁଁ ପର ଅଟେ ତୁମ୍ଭର ॥ ୨ ॥
ଅଭିରାମ ତୋର ହରି ଅଭିରାମ ମୋର ହରି ହେ
ତୋର ଅଭିରାମ ମୋର ଅଭିରାମ ନ୍ୟାୟରେ ହେବ ଯାହାର ॥ ୩ ॥



( ୧୨ )

ରମା ରମଣ ! ତୁମ୍ଭ ପାଦରେ ଶରଣ
ମୋର ମନ କଥା ଯାହା, ସବୁ ଜାଣ ଆପଣ ॥ ଘୋଷା ॥
ହେ ପ୍ରଭୁ ନରକେଶରୀ ! ଜଗତ ତୋ ଆଜ୍ଞାକାରୀ
ମୁଁ ନୁହେଁ କାହାର, କାରଣ-ମାରଣ-ତାରଣ ॥ ୧ ॥
ନ ଜାଣେ ଧର୍ମ ଅଧର୍ମ ଅଟେ ଦୁଃଖୀ ସୁଖୀ-ଶ୍ୟାମ ?
ଭକ୍ତ ଏତିକ ମୋ ହୃଦରେ ଆଜିତ ଶାଣ ॥ ୨ ॥
ଭକ୍ତଙ୍କୁ ତୋଳା ଗୋଚରେ ଅଭକ୍ତଙ୍କୁ ବହୁ ଦୂରେ
ଭକତ ଭବକୁ ଭେଳା ବାନ୍ଧିଛ ନାରାୟଣ ॥ ୩ ॥
ଭୁମର ଗୁମ୍ଫାରେ ଗଳି ଖେଳୁଛ, ଦୁଃଖୀ ସଙ୍ଗାଳି !
ହରଣ ଗୁଣ୍ଠନ ଫେଡ଼ାଣ ମିଶାଣକୁ ଜାଣ ॥ ୪ ॥

Digitized by PPRACHIN, SOA

ଯେଣିକି ଚାହିଁଲେ ମୁହିଁ      ତୁମ୍ଭ ଛଡା କିଛି ନାହିଁ
ପିଣ୍ଡ ବ୍ରହ୍ମାଣ୍ଡରେ ପୂରି ଅଛ ତ ? ଧ ୱଣ ॥ ୫ ॥
ବିଷୟୀ ନେତ୍ରକୁ ଦୂର      ରହିଛ ପାଶ ଚାକର
କୋଟିଏ ସୂର୍ଯ୍ୟଙ୍କୁ ନିନ୍ଦା କରୁଅଛି ଚରଣ ॥ ୬ ॥
ପାଦ ନାହିଁ ପାଣି ନାହିଁ      ରୂପାନ୍ତର ଶୂନ୍ୟ ଦେହି
ଭକତ ଭାବରେ ରୂପ କରୁଅଛ ଧାରଣ ॥ ୭ ॥
କହେ ଅଭିରାମ ଦାସ      ଭଜନ ଭାବକୁ ବାଇ
ଭକ୍ତ ଉଦ୍ଧାରଣ-ବେଶେ ଦେଖିଲି ମୋ ନୟନ ॥ ୮ ॥



( ୧୩ )

ଦୀନବନ୍ଧୁ ହେ,
ବନ୍ଧୁ ତୁମ୍ଭେ ମୋହର ।
ଯିଏ ଯେଉଁପରି      ଭାବୁଛି ତୁମ୍ଭଙ୍କୁ
ସେହି ଅନୁସାରେ ତୁମ୍ଭେ ତାହାର (ଘୋଷା)
ଲୁହ ଥାଇ ଯେଣେ      ବନ୍ଧୁ ! ଥାଅ ତେଣେ
ତୁମ୍ଭ ପରି ଜଣେ ଆଉ କେ ମୋର !
ନେତ୍ର ବୁଜି ଦେଲେ      ହୃଦରେ ପ୍ରକାଶ
ଯେଣେ ଲୁହେଁ ବନ୍ଧୁ ! ତେଣେ ତୁମ୍ଭର ॥ ୧ ॥
ଦେଖୁଛି ଜଗତେ      ବନ୍ଧୁ ଛନ୍ତି ଯେତେ
ଧନ ଦ୍ରବ୍ୟରେ ହୁଏ କାରବାର,
ତୁମ୍ଭପରି ବନ୍ଧୁ      କିଏ ସେ ହେବ ଭ
ଭବତ୍ରାହୀ ନାମ ହେବ କାହାର ॥ ୨ ॥

Digitized by PPRACHIN, SOA

ସଂସାରେ ଯେ ବନ୍ଧୁ ଦେବା ନେବା ବନ୍ଧୁ
ନ ଦେଲେ ନ ନେଲେ କିଏ କାହାର !
ତୁମ୍ଭପରି ବନ୍ଧୁ କିଏ ଯେ ହେବ କି ?
ମୁଣ୍ଡି କରିଦେବ ସୁଦାମା ପୁର ॥ ୩ ॥
କି ନ କଲ ବନ୍ଧୁ ମହାତ୍ମା କି, ବନ୍ଧୁ !
ବନ୍ଧୁ ପାଇଁ ବହିଲ ଅନ୍ନ ଭାର
ଜଗବନ୍ଧୁ ଯିଏ ବନ୍ଧୁ କାହିଁ ଅଛି
ଦୂତ ହୋଇ ଯିବେ ହସ୍ତିନାପୁର ॥ ୪ ॥
ହୃଦସ୍ଥ ବେଦନା କେ ବନ୍ଧୁ ଜାଣିବ
ପ୍ରାଣବନ୍ଧୁ ଛଡ଼ା କିଏ କାହାର ?
ଜୀବନର ବନ୍ଧୁ ହେ ପରମ ବନ୍ଧୁ !
ଯୋଗ୍ୟ ହେବ ସତେ ପଦକୁ ତୋର ॥ ୫ ॥
ତୁମ୍ଭଙ୍କୁ ପାଏ ମୁଁ ଭକ୍ତ ଯେଉଁପରି
ନଥିଲେ ନ ଥାନ୍ତୁ କେହ୍ବ ମୋହର
ଭୁକ୍ତେ ଅଭାଗମ ବନ୍ଧୁ ଭାସିଗଲେ
ଜଗବନ୍ଧୁ ! ମୋତେ ଉଦ୍ଧରି ଧର ॥ ୬ ॥

——⁘●⁘——

( ୧୯ )

ଆହେ ଜୀବର ଜୀବନ ! ତୁମ୍ଭଙ୍କୁ କି ଦେବି ଧନ (ଘୋଷା)

ଏ ଯେଉଁ ଦେହ ସଂସାର କେତ୍ତୁ ହୋଇଛି ତୁମ୍ଭର
ମୁଁ ଅଟେ ଅର୍ଦ୍ଧାଙ୍ଗୀ ମୋର ଧନ ମାତ୍ର ଜନାର୍ଦ୍ଦନ ॥ ୧ ॥

Digitized by PPRACHIN, SOA

ମୋର ଧନକୁ ଚୋରର / ହୋଇଣ କରିଲେ ଜୁର
ନନ୍ଦଙ୍କ ଭକତ ଗୃହେ / ରଖିଛନ୍ତି ସାଇତିଣ ॥ ୨ ॥
ଚୋରକୁ ନ ପାରେ ଧରି / ତୁମ୍ଭେ କି ନ ଜାଣ ହରି !
ତୁମ୍ଭେ ନ ଧରିଲେ ଚୋର / ଆଜ କେ ହେବ ଭଜନ ? ॥ ୩ ॥
କହେ ଅଭିରାମ ବାଇ / କୃପା ନେତ୍ରେ ଦେଲେ ଚାହିଁ
ଯେଣୁ ଚୋର ସେଣୁ ସାଧୁ / ନ ଥିବ ମୋହର ଭନ୍ନ ॥ ୪ ॥



( ୧୫ )

ଦୂତ ! କହିବୁ ଯାଇଁ / ମୋହର ଦୁଃଖ ଜଣାଇଁ ।
ନ ଶୁଣିବେ ଯେବେ ଚିତ୍ତ / ଶୂନ୍ୟରେ ଦେବୁ ଚେତାଇ ।
ଧୂଳି ଖେଳ ଖେଳେ ଯବେ / ଯାହା କହିଥିଲେ କର୍ଣ୍ଣେ
ସେ କଥାକୁ ଭୁଲିଲେ କି ? / ଚନ୍ଦ୍ରାବଳୀ ପୁରେ ରହି ॥ ୧ ॥
ଅକ୍ରୁର ଜାର ଜାତ / ବାସଙ୍କେ ବନାଇ ଚିତ୍ତ
ଖଳ ବିଚ୍ଛେଦରେ ବିପରୀତ / ରଖିଥିବେ ସ୍ନେହୀ ॥ ୨ ॥
କହେ ଦୀନ ଅଭିରାମ / ଦୂତି ! କହିବୁ ମୋ ନାମ —
ରାଧା ରାଧା ବୋଲି ବଂଶୀ / ବଜାଅନ୍ତି କାହିଁ ପାଇଁ ॥ ୩ ॥

()*○*()

( ୧୬ )

କାହିଁକି ମୋଠାରେ ହେଲା ହେ, ଚକା ଡୋଳା !
ଡାକିଲେ ନ ଶୁଣ କଷ୍ଟରେ
ଡାକି ଡାକି ଶୁଖି ଗଲାଣି ଗଳା ହେ ॥ ଘୋଷା ॥

Digitized by PPRACHIN, SOA

ଯେତେ ଡାକଲି ମୁହିଁ ଡାକ ଶୁଣିଲ ନାହିଁ
ନ ଶୁଣିଲ ନନ୍ଦଲଲା !
ହୃଦୟ ଏତେତ ଦାରୁଣ ନ ଶୁଣୁଛ ନାରାୟଣ !
ହୃଦେ ଧରି ବନମାଳା ହେ । ୧ ॥
ହୃଦୟ ଏତେ ନିଷ୍ଠୁର ନ ଶୁଣି ରଙ୍ଗା ଅଧର !
କେଣେ କର ଖେଳା ଲୀଳା ହେ ।
କହେ ଅଭିରାମ ଦାଇ ନ ଶୁଣ ହେ ଜଗଛାୟା
ଭସି ଯାଉଛି ଫାଗଲା ହେ ॥ ୨ ॥



( ୧୭ )

ଆହା ମୋର ଜୀବଧନରେ,
ନ ଥାଇ ବରଷ ହେଲ ସନ ଦିନରେ । ଘୋଷା ॥
ତୋର ଏ ଚନ୍ଦ୍ର-ବଦନ ଦେଖି ମୁଁ ହୁଏ ଉନ୍ମନ
ଆଖୁ ଅନ୍ତର ନ କର, ପ୍ରାଣଧନ ରେ ॥ ୧ ॥
ମନ-ରଙ୍ଗେ କର ସବ ଭବନ ନ ଦେଖାଇଲ ବଶ
ସେବ୍ୟ ପାଦେ ରଖ ମୋତେ ଜନାର୍ଦ୍ଦନ ହେ ॥ ୨ ॥
ଶରଦ-ପଦ୍ମ-ଚରଣ ତହିଁରେ ଥାଉ ଏ ମନ
କୁସୁମ-ହାର-ଭୂଷିଆ ! ରାଧା ଧନ ରେ ॥ ୩ ॥
ତୋର ଅଭୟ ପଦ୍ମର କ୍ଷଣେ ନ ହେଉ ପାସୋର
ଦୃଷ୍ଟି ଅଗ୍ରେ ରହି, ଦିଅ ଦରଶନ ହେ ॥ ୪ ॥

Digitized by PPRACHIN, SOA

ଗଗନରେ ଦିନମଣି — ଜଳେ ଫୁଟୁଛି ନଳିନୀ
ତା'ର ତା'ର ପ୍ରୀତି ପରି ଅକଳନ ରେ ॥ ୫ ॥

ତାର ଅଙ୍କୁରେ ରହିଛ — ପ୍ରୀତି-ବଂଶ ବଜାଉଛ
ଡାକ ଡାକ ନ ଶୁଣୁଛ ଭଗବାନ ହେ ॥ ୬ ॥

କହେ ଅଭିରାମ ଶୁଭେ — ଅଭୟ କରକୁ ଦେବେ
କହେ ଅଭିରାମ ମୋର ପଞ୍ଚପ୍ରାଣ ହେ ॥ ୭ ॥



( ୧୮ )

ଦିଅ ମୋତେ ଭକତ ଭଣ — ଆହେ ମୋର ଭକତ ପ୍ରିୟ !
ଜନ୍ମ ପଦେ ନାହିଁ ମୋ ଆଶ, ଭୁକ୍ତି ବୋଲି କଲି ନିଶ୍ଚୟ (ଘୋଷା)

ତୁମ୍ଭେ ନାଥ ଭବ ! କାଣ୍ଡାରୀ, — ମୋତେ ନ କରିବ କି ପାର ?
ତୋ ପଦ୍ମପାଦ ତରଣୀ, — ଦିଅ ଆଜ୍ଞା ନ ଥାଉ ଭୟ ॥ ୧ ॥

ପରିବେଷଣ କରେ ମାତ, — ଆନନ୍ଦେ ଭୁଞ୍ଜନ୍ତି ବାଳୁତ
ଭୁଲରେ ରହିଲ ଜଟେ, — ନ ଜାଣିଲ ଦେବାଧିରାୟ ॥ ୨ ॥

କହଇ ଅଭିରାମ ଦାଇ- — ନାଥ, ଦେଖି ଦେଲେ ଅନାଇଁ
ହେଳ ଉଣ୍ଡି ଅନାଇଛୁ, — ପଦ୍ମପାଦେ ଲଗାଇ ଲୟ ॥ ୩ ॥



( ୧୯ )

କେଉଁ ନଦୀରେ ହେବ ପାର, — ହେ ବଂଶୀଧର !
ସବୁବେଳେ ସବୁ କାଳେ — ତୁମ୍ଭେ ମୋର କର୍ଣ୍ଣଧାର ॥ଘୋଷା॥

Digitized by PPRACHIN, SOA

ନାହିଁ ଅଟେ ଦାତା ନ ସହେ ଅଧର୍ମ ଭାର
ନଅଟି ଘଟଣା ତାହାର, ହେ ବଂଶୀଧର ! ॥ ୧ ॥
ନାହିଁ କାଚ କେରୁଆଳ ଅକାଚ ଗଣ୍ଡିର ଜଳ
ତୁମ୍ଭେ ଅନୁକୂଳ ସମୀର, ହେ ବଂଶୀଧର ! ॥ ୨ ॥
ଯେଉଁ ଆତ୍ମେ ଗୁହ୍ଣ ଥାଇ ଜଳ ଜନ୍ତୁଙ୍କୁ ଦେଖଇ
ଆଗରେ ପ୍ରକାଣ୍ଡ କୁମ୍ଭୀର, ହେ ବଂଶୀଧର ! ॥ ୩ ॥
ହିକୁଟ ପର୍ବତ ପରେ ପଦ୍ମଫୁଲର ଉପରେ
ସ୍ୱାହାମ-ରମିକ-ଶେଖର, ହେ ବଂଶୀଧର ! ॥ ୪ ॥
ସେ ପଦ୍ମ ଶୂନ୍ୟେ ରହିଛି ନାଳ ତା'ର ନାହିଁ କଛି
ଭାସୁଛି ବିବିଧ ପ୍ରକାର, ହେ ବଂଶୀଧର ! ॥ ୫ ॥
ସେ ବାସ ଯୋଗେ ଭ୍ରମର ଉଡ଼ୁଛନ୍ତି ପଲ ପଲ
ଅନେକ ପତଙ୍ଗ ପ୍ରକାର, ହେ ବଂଶୀଧର ! ॥ ୬ ॥
ଭଣେ ଅଭିରାମ ବାଇ ବାଇ ଯେଉଁ ସ୍ଥାନେ ନାହିଁ
ତହିଁକି ନାହିଁ ନଅ ମୋର, ହେ ବଂଶୀଧର ! ॥ ୭ ॥

( ୨୦ )

ସୁତକର କହ, ନାଥ ! ମୁହିଁ ସବୁ ତୋର ଭୃତ୍ୟ ହେ
କାହାକୁ କହିବି ଦୁଃଖବାଣୀ ?
ଦୁଃଖୀଶ୍ୟାମ ସାନନ୍ଦ ! ଭକ୍ତପ୍ରିୟ କୃପାସିନ୍ଧୁ ହେ
କାହିଁକି ବହିଛ ବ୍ରହ୍ମବାଣୀ ॥ ୧ ॥
ଆହେ ପ୍ରଭୁ ଆନନ୍ଦ ! ଚକ୍ରମଣି ପୂର୍ଣ୍ଣାନନ୍ଦ ହେ
କାହା ପ୍ରେମେ ହୋଇବ ଆନନ୍ଦ ?

Digitized by PPRACHIN, SOA

ମୁଁ ଯଦ ଭୃମୃର ଦାସ ଆସି ମୋର କୋଳେ ବସ ହେ
ମଳ ଭୃଙ୍ଗ ହୋଇଣ ଆନନ୍ଦ ॥ ୨ ॥
ଦେଇଣ ଆନନ୍ଦ ମୋତେ ନେଇଯାଅ ଅନ୍ତୁ ଯେତେ ହେ
ନୋହିଲେ ଚଳିବକି ଏ ପୃଥ୍ୱୀ ?
ହର୍ଷେ ଭାଷେ ଅଭିରାମ ଅବିରାମେ ଅଭିରାମ ହେ
ଗ୍ରୁଡ଼ି ଭଜେ ଅଭିରାମ ନିତ ॥ ୩ ॥

—●—

( ୨୧ )

କୁଞ୍ଜ-କୁଟୀରେ ବସ, ବଂଶୀଧାରୀ !
ବଂଶୀ ଧା-ରୀ ବଂଶୀଧାରୀ ॥ ଘୋଷା ॥
ବଜାଅ ବାଁଶରୀ ଜଠୁ କଦମ୍ବ
ଅଭିରାମ ଶ୍ୟାମ ଯୋଗୀ ଯୋଗ ଭଞ୍ଜନ
ମୋ ନୟନ-ମୋହନ ଶଢ଼ରୀ ॥ ୧ ॥
ରସ ସାଗର ନାଗର ବ୍ରଜଶୌ !
ମନ-ମନ୍ଦରେ ବସ ହସି,
ବଧି ଲକ୍ଷନ ମାନ ବଙ୍କ-ମନ-ମୋହନ
ଆସ ଆସ ହୃଣ ହୃଦୟ-ବିହାରୀ ॥ ୨ ॥
କ୍ଷିପ୍ରମଣ୍ଡ ହୃତ ଭଦକ ମୋ ହୃଣ
ଭୃମ୍ଭ ବକ୍ଷେ ବେ ସବୁ ବନ୍ଧ,
ଅଭିରାମ ଭାଷଇ ନ ଭାଷଇ ଭାଷଇ
ଆସ ଗିରିଧାରୀ ! କଛୁ ନ ବନ୍ଧିର ॥ ୩ ॥

Digitized by PPRACHIN, SOA

( ୨୨ )

ସତ୍ୟନାରାୟଣ ସ୍ୱାମୀ ହେ, ବନ୍ଦେ ଜଗତନାଥ !
ଜୀବଂଭୂତ ଭୂତ ବଳଗ ଛୋଡ଼ି ନ ପାଏ ଅନ୍ତ ॥ ୧ ॥
ସତ୍ୟନାରାୟଣ ନାମରେ ବାନା ଉଡ଼ୁଛି ପରା
ମିଛ ନାରାୟଣ କ ପାଇଁ ହୁଅ ମନର-ଧରା ॥ ୨ ॥
ତୁମ୍ଭ ମାୟା ତୁମ୍ଭେ ଜାଣ ମୋର ଆୟତ୍ତ ନାହିଁ
କହେ ଅଭିରାମ ନାମରେ ବାନା ଉଡ଼ୁଅଛଇ ॥ ୩ ॥
ସତ୍ୟ ନାରାୟଣ ପୂଜାରେ ପରା ବଳନ୍ତି ମନ
କେଉଁପର ପୂଜା ହୋଇବ, ଆହେ ମଧୁସୂଦନ ! ॥ ୪ ॥
ତାର ଜ୍ଞା ନ ତାର ତୁମ୍ଭର ନାମ ପତିତ-ନାଥ
ଜେଣୁ ଅଭିରାମ ଭରସା କରି ଅଛି ସନ୍ତତ ॥ ୫ ॥

* - *

( ୨୩ )

ଆହେ ପ୍ରଭୁ, କମଳା-ନାଥ
ଯାହା ଦେଇଥିଲ ଜାଅ ଫେରସ୍ତ ।
ଦେବା ପାଇଁ ତୋତେ କଏ କହୁଥିଲା ?
ନେବା ପାଇଁ କମ୍ପା ମନେ ଦୁଃଖିତ ॥ ଘୋଷା ॥
କେଲହୁଁ ଯେବେ ଜାଣିଥାନ୍ତୁ ତୋ ଧନ ମୁଁ କମ୍ପା ନଅନ୍ତୁ ?
ଦେଇଥିଲ ଯାହା ନଅ ଏବେ ତାହା ଜାଣିଲ ହେ ଜନକ-ସୁତା ନାଥ
ମିଛ ବୋଲି ଭାବିଲି ଯାହା ପ୍ରକୃତରେ ଦେଖିଲି ତାହା
ତୁମ୍ଭ ଧନ ହଅ ମୋର ଧନ ନଅ, ଜଗତ ଭକତ ମଙ୍ଗଳ ହିତ ॥୨॥

Digitized by PPRACHIN, SOA

ଦସି କହଇ ଅଭିରାମ ଦେବା ନେବା ହେଲ ସମ୍ପୂର୍ଣ୍ଣ
ଏଥିଠାରୁ ପୋଥି ବନ୍ଦା ହୋଇଗଲା,
ଜୟ ହୋଇବ ଏଡ଼ିକି କହୁ ଶୁଣ ॥ ୩ ॥

( ୨୪ )

ନାଥ ମୋତେ ଛାଡ଼ ଯାଅ ନା,
ଏ ଭବ-ସାଗରେ ହରି ! ଭସାଇଣ ଦିଅ ନା (ଘୋଷା)

ନ ପାଇ ତୁମ୍ଭର ଅନ୍ତ ହେଉଅଛି ମୁଁ ଅନାଥ
କେବଳ ଚାହିଁଛି ନାଥ ଆଶ୍ରା କର ହେ ତାନା ॥ ୧ ॥
ଶ୍ରୀ କୃଷ୍ଣଚନ୍ଦ୍ରଙ୍କ ନାମ କରୁଥାଇ କଣ୍ଠେ ଗାନ
କେଣ୍ଟ ମୋତେ କହନା ॥ ୨ ॥
ସତ୍ୟ ନାରାୟଣ ନାମ
ଯାଙ୍କୁ କରିଥିଲ ସାର ସେ ଏବେ ହୋଇଲ ପର
ତାଙ୍କ ତନ ଗଦା ପଦ୍ମ ବଦ କାହିଁ ପାଇଁ ନା ॥ ୩ ॥
ଅନ୍ତର୍ଗତ ନାରାୟଣ ମୁଖେ କହେ କୃଷ୍ଣ ନାମ
ଅଭିରାମ ନାରାୟଣ ଅଭିରାମ ବାଅ ନା ॥ ୪ ॥

( ୨୫ )

ଅନ୍ତର୍ଯ୍ୟାମୀ ନାଥ ! ନ ଜାଣ କି ମୋହର ମନ ?
ଭୃତ୍ୟ ମନ ବୁଝିବାକୁ କି ଅଜଣା—
ହେଲ ପର ଏବେ ଦିଶୁଛ ମୋତେ, ହେ ନାରାୟଣ ( ଘୋଷା )
ସବୁ ଘଟେ ରହିଛ ପୂରି ତେଣୁ ତାହାର ନାମ ପୁରି
ପୁରୁଷ ଉତ୍ତମ ତେଣୁ ପୁରୁଷୋତ୍ତମ
ନାମ ବହିଛ ହେ ଲକ୍ଷ୍ମୀ-ରମଣ ! ମୋର କଷଣ ॥ ୧ ॥

Digitized by PPRACHIN, SOA

ମନ କଥା ଜାଣ ନ ଜାଣ ତୁମ୍ଭ ପାଦେ ରଖ ଶରଣ
ପିଣ୍ଡର କରତା ! ଏଣୁଠାରୁ ପୋଥି
ବନ୍ଧା ହୋଇଲା ହେ ରମା-ରମଣ ! ଜଳ ଅର୍ପଣ ॥ ୨ ॥

ଜନମ ଜଠରୁ ଶରଣ ପଶିଛି ତୋ ପଦ୍ମଚରଣ
ଏବେ ଆଉ କସ ଶରଣ ପଶିବ ?
ଅଭିରାମ ତୋର ମୋ ନାରଯୂଣ, ପଦ୍ମା-ରମଣ ॥ ୩ ॥

❊ ❊ ❊

( ୨୬ )

ତୁମ୍ଭେ ମୋର, ମୁଁ ତୁମ୍ଭର ଆହେ ମୋର ସ୍ୱାମୀ
ତୁମ୍ଭେ କ ନ ଜାଣ, ଆହେ ଗୁରୁ ଅନ୍ତର୍ଯାମୀ ! ॥ ଘୋଷା ॥
ନ ଜାଣେ ଧର୍ମ ଅଧର୍ମ ଆହେ ସ୍ୱାମୀ ଅଭିରାମ
ତୁମ୍ଭେ ପ୍ରେମ ଦେଲେ ମୁହିଁ ହୋଇବ ପ୍ରେମୀ ॥ ୧ ॥
ନ ଇଚ୍ଛେ ସୁଖ ଦୁଃଖକୁ ସବ ଅର୍ପଣ ତୁମ୍ଭଙ୍କୁ
ତୁମ୍ଭ ବନା ମୁହିଁ ମାୟା-ସଂସାରେ ଭ୍ରମି ॥ ୨ ॥
କହେ ଅଭିରାମ ବାଇ ମୋ କଳେ କର୍ମ ନୁହଇ
ତୋ କୃପାରେ ଜଗମକୁ ପାରେ ମୁଁ ଗମି ॥ ୩ ॥

❊❊❊

( ୨୭ )

ଜୟ ବ୍ରଜରାଜ !

ତୁମ୍ଭେ ଶାନ୍ତ ଧାମ ଠାରେ ଆଅ ପୂଜା ( ଘୋଷା )

Digitized by PPRACHIN, SOA

ଶୂନ୍ୟ ମଠକୁ ଶୂନ୍ୟ ପୂଜାଶ୍ମ          ଶୂନ୍ୟରେ ଶୂନ୍ୟରେ ଫଡ଼େ ହୁରି
ଶୂନ୍ୟ ଠାକୁରକୁ ଛପନ ଭୋଗକୁ, ଶୂନ୍ୟେ ଶୂନ୍ୟ ହୋଇଅଛି ଖଞ୍ଜା ॥୧॥

ଛପନ କୋଟି ଶୂନ୍ୟ ମଠରେ          ଚଟେଗୃ ଭ୍ରୁଅନ୍ତି ଅଚାନ୍ତାରେ
ଶୂନ୍ୟ ମଠ ଭେଦ ଯେ ଖାଇ ପାଶବ ତା'କୁ କ କରବ ଯମରାଜା ॥୨॥

ଶୂନ୍ୟ ମଠ ଅଟେ ଅବାରଣ          ନଡଣୁ ଗୃହାଶ୍ରମ ଫଣା ଫଣ
ଯେଝା ମନସ୍କାମ ପୂରଣ ହୁଅଇ ଯେ ବୁଝୁଛି ସେହି ଜାଣେ ମଜ୍ଜା ॥୩॥

ସେ ମଠ ମହିମା ଅନ୍ତ ନାହିଁ          ନିନ୍ଦା ନାହିଁ କି ପ୍ରଶଂସା ନାହିଁ
ଯେ ଯାହା ମାଗଇ ସେ ତାହା ପାଅଇ ଠାକୁର ନାମ କଂସ ଭଞ୍ଜା ॥୪॥

କହେ ଅଭିରାମ ବାଇଧର          ପାପୀ ମାନଙ୍କର ମୋକ୍ଷ ଦ୍ୱାର
ଅବଧୂତ ନାମେ ବାନା ଉଡୁଅଛି ଦର୍ଶନ କରିଣ ପାପ ହରା ॥ ୫ ॥

କହେ ଅଭିରାମ ଧରି ବାଇ ଜ୍ଞାନ ନେତ୍ରେ ଚାହିଁ ଦେଖ ଯାଇ
ଅଳ୍ପ ସ୍ୱଳ୍ପ ସାଧୁ କରିଣ ପାଇବା ବିଜୟେ ନାସ୍ତି ପଙ୍କଜା ॥ ୬ ॥



( ୨୮ )

## ହୃଦବର ନ କର, ହରି !

ମୋର ହରି ରହିଅଛି କରେ ଭୂମିର ॥ ଘୋଷା ॥

ହରି ଯଦି ବନେ ଜାଣ          ହରିରେ ବଳଇ ମନ,
ହରିଇ ହରିକି ଦେଖି ଭୁଲଇ ହରି ॥ ୧ ॥

ହରି ଦାସ ହୋଇ କରି          ରହିଅଛି ହରି ଚଉ
ହରିରେ ଝଷିଲେ ଲଙ୍କା ହେବ କାହାଣି ? ॥ ୨ ॥

ହରି ହରି ହରି ହରି          ହରିରେ ଘର ଛଆଣି
ମୋତେ ରଖି ଏଥି ହରି ରହିଲ ହରି ॥ ୩ ॥

Digitized by PPRACHIN, SOA

ଦରିକ ମୋ ନାହିଁ ଭୟ ହରି ମୋର ଦୟାମୟ
ହରି ଭଜେ ହେଲେ ନାଶ ହୋଇବେ ହରି ॥ ୪ ॥
କହେ ଅଭଗମ ହରି ! ହୋଇଛି ମୁହିଁ ନ୍ଦୁମତି
ହର୍ଷେ ଆସ ମୋ କୋଳକୁ, ବନ-ବିହାରି ॥ ୫ ॥



( ୧୪ )

ଆହେ ପ୍ରଭୁ ଲକ୍ଷ୍ମୀ-ବଲ୍ଲଭ !
ଏ ସଂସାରେ ଆଉ କି ଅଛି ଲାଭ ?
ସତ୍ୟନାରାୟଣ ବୋଲି ଡାକ ୨ ଶୁଣି ହୋଇଲଣି ଏ ଉତ୍କଳ(ଦେଶ)
କଳି ଆସି ହେଲା ପ୍ରବଳ ଛନାଛୁଛି ସତ୍ୟର କୂଳ
ତୋ ଭକ୍ତମାନଙ୍କୁ ଅଥୟ କଲଣି, କାହା ମୁଖରୁ କି କଥା ଶୁଣିବ ।୧।
କେ ଭକ୍ତ କହୁଅଛି ଡାକ ଆମ୍ଭେ ଜନମିଛୁ କଳଙ୍କି
ମ୍ଲେଚ୍ଛ ଯବନଙ୍କୁ ସଂହାର କରିବୁ, ଏହି କଥା ଜାଣ ଅଟଇ ଧ୍ରୁବ ।୨।
କେ ବୋଲୁଛି ମୁଁ କାଶୀବାସୀ ଜନମିଛି କଳରେ ଆସି,
ଧବଳ ଘୋଟକେ ଆମ୍ଭେ ବିଜେ କରି, ସଂହାର କରିବୁ ଦୈତ୍ୟଦାନବ
କେ କହୁଛି ଆମ୍ଭେ ଅଚ୍ୟୁତ କେ କହେ ମୁହିଁ ଯଶୋବନ୍ତ
କେ କହେ ଅନନ୍ତ ଆମ୍ଭେ ଜଗନ୍ନାଥ,
କେ ବୋଲେ ଆମ୍ଭେ ଅଟୁ ବଳଦେବ ॥୩॥
ଭକ୍ତଙ୍କର ଭାବ ଦେଖିଣ ହେ ପ୍ରଭୁ ସତ୍ୟନାରାୟଣ
ଅନୁମାନ କରି ବୁଝିଲ ବେଳକୁ, ଶୁଭ କଥାକୁ କରନ୍ତି ଅଶୁଦ୍ଧ ॥୪॥
ଭକ୍ତଙ୍କର ବିଭ୍ରମ ବାକ୍ୟ କମ୍ପା କହୁଅ ପଦ୍ମମୁଖ ?

Digitized by PPRACHIN, SOA

ସକଳ ଦୋଷ ତୁମ୍ଭର ଅଟେ ପ୍ରଭୁ !
ଯେଣୁ ସକଳ ଘଟେ ବାସୁଦେବ ॥ ୬ ॥
ତୁମ୍ଭ ଘର ନ ରଖ ତୁମ୍ଭେ ରଖ ବା ବୋଲୁ ନାହିଁ ଆମ୍ଭେ
ମ'ତଳୁ ଗୁଣଅଙ୍କ କଏ ନେଲ ? ତ' ତଳେ ରହିଲ ହେ କେଶବ ॥୭॥
ମୁଖ, ନାସା, ଚକ୍ଷୁ, କର୍ଣ୍ଣରେ ମଜା ଭେଜ ପ୍ରେମାନନ୍ଦରେ
କହେ ଅଭିରାମ ସତ୍ୟ ନାରାୟଣ
ତୁମ୍ଭ ଖେଳ ଏତେବ ତୁମ୍ଭେ ଜାଣିବ ॥ ୮ ॥

***

( ୨୫ )

ଭକ୍ତ-ଉଦ୍ଧାରଣ-କେଶ ଦେବ କେତେ ବେଳ ରେ ?
ଦେଖା କଲେ ଦେଖା ବୁଝୁଅଛି ଗଳାମାଳା ରେ ॥ ଘୋଷା ॥
ବଦନ ଘନ-ସୁନ୍ଦର ଭେକ-ପୁଚ୍ଛ-ଚୂଳ ରେ ।
ମନ ମୋର ଲେଟିଯାଉ ହାଦ ପଦୁ ତଳ ରେ ॥ ୧ ॥
ଗଳାରେ ଲମ୍ବିଛି ଯା'ର ବୈଜୟନ୍ତୀ ମାଳରେ ।
ଆଖି ମୋର ଲଖି ଯାଉ ଷଟପଦ ବଳ ରେ ॥ ୨ ॥
କେ ନାଚକ ତଳ ତଳ ଏହୁ ନନ୍ଦ-ବାଳରେ ।
ଦେଖି ଅଭିରାମ ତାଙ୍କୁ ହେଉଥିବ ହେଳରେ ॥ ୩ ॥

***

( ୨୬ )

କେତେ ଦନ ପୂଜବ ମୁଁ ବାଷ୍ଟୁ ହେ, ବଇକୁଣ୍ଠ ! ॥ ଘୋଷା ॥
ମୁହିଁ ଅପରାଧୀ, ତୁମ୍ଭେ କୃପାନିଧି,

Digitized by PPRACHIN, SOA

ମୁଁ ସିନା ଜର୍ଦ୍ଧସ୍ୱା, ତୁମ୍ଭେ ଦୟାନିଧି ।
ମୁହିଁ ଅଜ୍ଞାନତା, ତୁମ୍ଭେ ଜ୍ଞାନଦାତା, ମୁଁ ମାନ ଆପଣ ଗଣନ୍ତୁ ହେ ॥୨॥
ମୁଁ ସିନା ଭକ୍ତ ତୁମ୍ଭେ ପ୍ରଭୁ ! ଧନ,
ଆପଣଟି ଶୂନ୍ୟ, ମୁଁ ହେଲି ପବନ
ଚାଆଁଇ ଶୋଇଲେ, କି କରିବ କହ ? ଚତୁର୍ଦ୍ଧାମୂର୍ତ୍ତି ହୋଇ ଜଠ ହେ
ମୁହିଁ କ୍ଷୁଦ୍ର ନଦୀ ତୁମ୍ଭେ ବାରିନିଧି,
ମୁଁ ସିନା ଜର୍ବୁଦ୍ଧି ତୁମ୍ଭେ ମୋର ବୁଦ୍ଧି
ପୁତ୍ର କଲେ ଦୋଷ, ପିତା କଲେ ରୋଷ,
ନଷ୍ଟେ ଏ ସଂସାର ହେବ ନଷ୍ଟ ହେ ॥ ୩ ॥
ସ୍ତ୍ରୀ ଯଦି ଦୋଷୀ ହେଲେ, କ୍ଷମା କରେ କାନ୍ତ,
ଦାସୀ ଦୋଷୀ ହେଲେ, ମୋ ପ୍ରଭୁ ଅନନ୍ତ,
କହେ ଅଭିରାମ ସତ୍ୟନାରାୟଣ, ତୁମ୍ଭେ ଏକ ସିନା ମୋର ଇଷ୍ଟ ୪॥

✻ ✻

( ୩୨ )

ଦୟାମୟ ନାରାୟଣ, ଚରାଚର ବ୍ୟାପିଅଛ ଆପଣ ହେ ।
ଆରତ ତ୍ରାଣ ! ତୁମ୍ଭ ପଦରେ ଶରଣ ॥ ୧ ॥
ଦେଲହୁଁ ଶରଣ ରଖ, ପଡ଼ନ୍ତୁ ନ ଥାଉ ମୋର କଳଙ୍କ ହେ
ପଙ୍କଜ-ମୁଖ ! ତୁମ୍ଭେ ମୋର ସର୍ବ ସୁଖ ॥ ୨ ॥
ହୃଦେ ତୁମ୍ଭ ଅଛ ରହି, ଯାହା କରାଉଛ କରୁଛୁ ମୁହିଁ ହେ
କଳା-କହ୍ନାଇ ! ପାପ ପୁଣ୍ୟ ନ ଜାଣଇ ॥ ୩ ॥
ହଂସ ରୂପେ କର ଖେଳ, କମଳାଙ୍କ ସଙ୍ଗେ ହୋଇଛ ମେଳ ହେ
ନନ୍ଦ-ଦୁଲାଳ ନଅ ସର୍ବ କର୍ମଫଳ ॥ ୪ ॥

Digitized by PPRACHIN, SOA

କହେ ଦାଇ ଅଭିରାମ, ଚଞ୍ଚଳଠାରୁ ମାୟାଧର ନାମ ହେ
ନେତ୍ରାଭିରାମ ! ବେଳକୁ ନ ଥାଉ ଭ୍ରମ ॥ ୫ ॥



( ୩୩ )

କାହିଁ ପତିତପାବନ ହେ ନିଷ୍ଠୁର କି ତୁମ୍ଭେ ହେଲ ?
କୃପାସିନ୍ଧୁ ନାମ କାହିଁ କୃପାସିନ୍ଧୁ ! ନଦୀ ଜଳୁ ଉଣା ହେଲ (ଘୋଷା)

ଦୟାନିଧି ବୋଲି ନାମଟି ତୁମ୍ଭର କିଏ ବାନ୍ଧି ଦେଇଥିଲା ?
ନର୍ଦ୍ଦ୍ୟା-ନଦୀ ବୋଲିଣ କିଏ ଦେଲା ? କହ କହ ନନ୍ଦଲାଲା । ୧ ।
ଲକ୍ଷ ଯୋଜନରେ ଭକ୍ତ ଡାକୁଥିଲେ କର୍ଣ୍ଣେ ତେଣେ ଶୁଣୁଥିଲ ।
କାର ଅଙ୍ଗୁଳି ଦୂରରେ ରହିଅଛ ତୁମ୍ଭେ ପର ଚିତ୍ତଚୋର । ୨ ।
ଦ୍ୱାଦଶ ଅଙ୍ଗୁଳି ଦୂରରେ ରହିଣ ଡାକ ଡାକି ନ ଶୁଣୁଛ ।
ଲକ୍ଷେ ଯୋଜନରେ କିପରି ଶୁଣିଲ, କହ ହେ ବ୍ରଜ-ସୁନ୍ଦର ! । ୩ ।
ମୋର ଡାକ ଯେଉଁ ତୋର ଡାକ ଯେଉଁ ଏଥି ଅନ୍ତର ନ କଲ ।
ଅନ୍ତର୍ଯ୍ୟାମୀ ତୁମ୍ଭେ ଭକ୍ତର ଡାକକୁ ଇଙ୍ଗିତ ପରି ମଣିଲ । ୪ ।
କହିଲେ ଯଦ୍ୟପି ସତ୍ୟ ନ ହୋଇଲା କହ ହେ ଲବଣୀ ଚୋର !
ନ କହିବ ଯେବେ ତୁମ୍ଭର ଘରକୁ ତୁମ୍ଭେ ଏଥର ସମ୍ଭାଳ । ୫ ।
କହେ ଅଭିରାମ ଆହେ ଅଭିରାମ ନିଷ୍ଠୁରିମରେ ତ ରହିଲ ।
କିମ୍ପାଁ ମୋର ନିଜ ଗୁରୁ ବୋଲି କରି ଶ୍ରୀମୁଖେ କଥା କହିଲ ? । ୬ ।
କିମ୍ପାଁ ଏବେ କଳି କର୍ମକୁ ଦେଖିଲ ତୋର ଘର ତୁମ୍ଭେ ସମ୍ଭାଳ ।
କହେ ଅଭିରାମ ମନର ବଚନ ଶ୍ରୀଚୈତନ୍ୟ ଶଚୀବାଳ ! । ୭ ।



Digitized by PPRACHIN, SOA

( ୩୪ )

ଜୟ ପତିତ-ପାବନ ହେ, କୁମୁଦ-ବନ୍ଧୁ ବଦନା
ଜୟ ଜୟ ସତ୍ୟନାରାୟଣ ସ୍ୱାମୀ ସୁଦର୍ଶନ ମେଘରେ ଅନା । ୧ ।
ପତିତ-ପାବନ ନାମେ ମଙ୍ଗଳଚଣ୍ଡ ଉପରେ ଉଡ଼ୁଛି ବାନା ।
ଧବଳ ଚଣ୍ଡରେ ସତ୍ୟ କରାଇଲ ଅସତ୍ୟକୁ କଲ ମନା । ୨ ।
କହେ ଅଭିରାମ ଭୁବନ ନାମରେ ଘର ଘର ଉଡ଼େ ସିନା ।
ସତ୍ୟକୁ ସ୍ଥାପିଣ ଅସତ୍ୟ ଦୁଷ୍ଟଙ୍କୁ କରି ଦେବ ପରା ଚୂନା । ୩ ।



( ୩୫ )

ରକ୍ଷାକର ଆହ୍ୱମୂଳ ହେ ଆସି ପଡ଼ିଲା ସଙ୍କଟ ବେଳ (ଘୋଷା)
ସାରା ପୃଥିବୀର ଯେ ଯୁଦ୍ଧ ବ୍ୟାପିଗଲା ବାଜଇଣି ଖୋଳ ତାଳରେ ।
ରାଜ୍ୟ ବିସ୍ତାରରେ ନୃଶଂସ ବୁଦ୍ଧିରେ କଷାକଷି ହେବ ବଳରେ । ୧ ।
ନିରପେକ୍ଷ ହୋଇ କେହି ନ ରହିବେ କାଳର ଗତି କୁଟିଳ ରେ !
ଜଡ଼ ବିଜ୍ଞାନକୁ ବଡ଼ ମନେ କଲେ ଚିନ୍ତା ନହୋଇବ ମୂଳରେ । ୨ ।
ପୃଥିବୀରୁ ତିନି ଭାଗ କାଳୀ ଭୋଗ ଏଣୁକରି ଯୁଦ୍ଧଗୋଳ ରେ ।
ଦୁଇ ଜଣଙ୍କର ମାଡ଼ଗୋଳ ହେଲେ ତିନିର ପଡ଼ିବ ତାଳ ରେ । ୩ ।
ବେଳ କାଳ ଜାଣିକରି ଚକ୍ରପାଣି ସଙ୍ଗେ ଧରି ଭକ୍ତ ଦଳରେ ।
ଧର୍ମକୁ ସ୍ଥାପିବେ ଦୁର୍ଜନ ନାଶିବେ ଖେଳିବେ ଗୁପତ ଖେଳ ରେ । ୪।
ଅନନ୍ତ କେଶରୀ ଜନ୍ମ ହୋଇଛନ୍ତି ଯାର ନାମ ମଧ୍ୟ-ପାଳ ରେ
ଲକ୍ଷ୍ମୀ ସିଂହାସନେ ଅଭିଷିକ୍ତ ହେବେ ଧ୍ୱନି ହେବ କୋଳାହଳ ରେ ।୫

Digitized by PPRACHIN, SOA

ତେବେ ଯାଇ, ଶୋକ ମଣ୍ଡନ ଭଜନ ମାଧବ ଜଣବେ ମେନ ରେ ।
କହେ ଅଭିରାମ ଚୈତନ୍ୟଙ୍କ ଲୀଳା କରିବେ ଭକ୍ତ-ବତ୍ସଳ ରେ ॥ ୭ ॥

* * *

( ରାଗ )

ଜୟ କ୍ଷୀରାବ୍ଧି ତନୟା ଗୋ ଭୁତ ସର୍ବ ଜୀବେ ଦେଉ ଛଡ଼ି ।
ଛପନ କୋଟି ଜୀବକୁ ଯେଣ୍ଟା ମତେ, ଦେଉଅଛ ସବୁ ଛଡ଼ି ।ଘୋଷା।

ଚୈତନ୍ୟ ସୂତ୍ରରେ ଛଡ଼ି ବାନ୍ଧି ଅଛ ଜୀବଙ୍କୁ ନ ଯାଅ ଛାଡ଼ି ।
ଜାହା ଯୋଗେ କ୍ଷୀର ସରପୁଳି ଖାଅ ମୋ ଜଗତେ ଅଛି ମୁଣ୍ଡି ॥ ୧ ॥

ଅନ୍ନ ଜଳ ଥିଲେ ଖାଅଣ ନ ମିଳେ ଆଜ୍ଞା ଛଡ଼ି ଦେଉ ବୁଢ଼ୀ ।
ତାଇ ବିନା ଏତେ କଷ୍ଟ କେ ସହିବ ? ମଠରୁ ଦେବୁ କି ତଡ଼ି ? ॥୨॥

ଲକ୍ଷଣ ବର୍ଣ୍ଣ କୁଳରେ ସିନା ତୋର ପୁଅ ରହିଅଛି ଛଡ଼ି ।
ମିଠା ଲକ୍ଷ୍ମୀ ମନେ ଥାଉ କି ନ ଥାଉ ଜଳେ ଯାଉ ଛଡ଼େ ବୁଡ଼ି ॥୩॥

ଛତ୍ର ଛତ୍ରୀ ତୁମ୍ଭେ ବଡ଼ାଇ ଚଢୁଛ ମୋ ଘରକୁ ଦେଲ ଯୋଡ଼ି ।
ତୁମ୍ଭ ଘରେ ମୋତେ ବନ୍ଦୀକରି ରଖିଣ ଗଲ ମାତା ପିତା ଛାଡ଼ି ॥୪॥

ମୁଁ ଅଜ୍ଞାନ ବାଇ ମାତା ପିତା ନାହିଁ ପୁଅ ଯାଉଅଛି ଲେଉଡ଼ି ।
କଳି ଯୁଗେ ପିତା ପୁତ୍ର ଭିନ୍ନ ହୁଅନ୍ତି କଳି ପୁରାଣକୁ କାଢ଼ି ॥ ॥

ପିତା ଠାରୁ ଛଡ଼େ ମୁଁ ଭିନ୍ନ ହୋଇବି ମାତା ମୋହର ଲଗାଡ଼ି ।
ମାତା ପୁତ୍ର ଦୁଇ ବସୁରଲେ ଆମେ ବୁଢ଼ାକୁ ଦେବା ଘଉଡ଼ି ॥୬॥

କହେ ଅଭିରାମ ନାରାୟଣ ପାଦେ ମାଗୁଅଛି କରଯୋଡ଼ି ।
ମୋର ଛଡ଼ି ସିନା ଲକ୍ଷ୍ମୀନାରାୟଣ ଦେଖିବ ଏ ନେତ୍ର ଯୋଡ଼ି ॥୭॥

Digitized by PPRACHIN, SOA

( ୩୭ )

ଜୟ ତୁ ଆଦ୍ୟମାତ ! ଜୟ ପାପ-ଧ୍ୱଂସିନୀ ଗୋ
ଅନାଦି କୃଷ୍ଣଙ୍କ ମନମୋହିନୀ ଗୋ ॥ ପଦ ॥

ହେ ଘଟବାସିନୀ ! ଦୁଃଖ ବିମୋଚନୀ ।
ଭବାନୀ ! ଭବୁ ଉଦ୍ଧର ଜନନୀ ଗୋ ॥ ୧ ॥

ଅଜ୍ଞାନ ବାଳୁତ ଆଗୋ ଆଦ୍ୟ-ମାତ !
ସର୍ବଦା ତୋ ପଦେ ଅଟଇ ଋଣୀ ଗୋ ॥ ୨ ॥

ପୂର୍ବ ଦୋଷ କ୍ଷମା କର ଆଗୋ ରମା !
ସୁଦୟା କର, ସଙ୍କଟ ତାରଣୀ ଗୋ ॥ ୩ ॥

ଦୟାର ଆଧାର ଅଟେ ତୋ ପୟର
ବଢାଅ ମୋ ହୃଦେ ଏହି ମାଗୁଣି ଗୋ ॥ ୪ ॥

ଅଭିରାମ ତୋର ପୟର କଙ୍କର
ରଖ ବା ନ ରଖ; ତୋ ଇଚ୍ଛା ପୁଣି ଗୋ ॥ ୫ ॥

***

( ୩୮ )

ଜୟ ସତ୍ୟନାରାୟଣ ହେ,
ଶିରିଣୀ ଖାଇବାକୁ କ କଲ ମନ ହେ ॥ ଘୋଷା ॥

ଚତୁର୍ଭୁଜ ମୂରତି ହୋଇ ବସିଅଛ କାହିଁପାଇଁ
ଗମ୍ଭୀର ସ୍ୱରେ ଟାଣିଲ ମୋର ମନ ହେ ॥ ୧ ॥

ଭୋଳେ ନାହାନ୍ତି କମଳା ଭିଡ ମୋର ଗଳାମାଳା
କେ ଭୋଳେ ଧରିବ କହ ଭଗବାନ ହେ ॥ ୨ ॥

Digitized by PPRACHIN, SOA

କହେ ଚାଇ ଅଭିରାମ ଦେଖି ଏ କାଳ ଲକ୍ଷଣ
ମ୍ଳେଚ୍ଛ ନାଶ ହସ୍ତେ ଧର ସୁଦର୍ଶନ ହେ ॥ ୩ ॥

O✱❁✱O

( ୩୯ )

ନମୋ ନାରାୟଣ ଭକତ-ତାରଣ
ତୁମେ ଟଗ ମୋର ପ୍ରାଣନାଥ କି ?
ମାଧୁର୍ଯ୍ୟ ମୂରତି ଦେବଙ୍କ ପତି
ତୁମ୍ଭେ ମୋର ମୁହିଁ ତୋର ନୁହିଁ କି ? (ଘୋଷ
ଯାହା କରାଇଥିଲ; ନାରାୟଣ ! ତା' ଏବେ ଆପଣ କର ଗ୍ରହଣ
ତୁମ୍ଭ ଧନ ନିଅ ମୋର ଧନ ଦିଅ
ବୁଝିଲେ ତ ଆଉ ଭିନ୍ନ ଅଛି କି ? । ୧ ।
ଯା କୃପାରେ ମୂକ କହେ ବଚନ, ପଙ୍ଗୁ ଡେଇଁ ପଡେ ଗିରି ଗହନ
ଯା ଆଜ୍ଞାରେ ଜଳେ ପାଷାଣ ଭାସଇ
କି ବଡ଼ କଥା ତୋତେ ରହିଅଛି କି ? । ୨ ।
କର୍ମଫଳ ଗୋଟି ଗ୍ରହଣ କର, ନ କରିଛ ଯଦି ଚଞ୍ଚଳ କରୁ
କହେ ଅଭିରାମ ସତ୍ୟ ନାରାୟଣ
ଦୁଷ୍ଟ ନିବାରଣ ସନ୍ତ୍ର ପାଳ କି ? । ୩ ।

—O✱O—

( ୪୦ )

ନନ୍ଦ ନନ୍ଦନ ହେ ସୁଦୟା କର
ଜନ୍ମେ ଜନ୍ମେ ମୁହିଁ ତୁମ୍ଭ କିଙ୍କର,

Digitized by PPRACHIN, SOA

ଦୃଷ୍ଟିର ଅଗ୍ରତେ   ଖେଳୁଛ ନଉତେ
ଓଳିଛଁପନ୍ତ ହରି ମୋର କୋଳରେ ॥ ଘୋଷା ॥

କାହିଁତ ଦୋଷକୁ ଏତେ ନିଷ୍ଠୁର ହୋଇଅଛ ଆହେ ରଙ୍ଗା ଅଧର !
ଭୃତ୍ୟ ସଦା ଅପ-   ରାଧୀ ହେବା ଯୋଗୁ
ତେଣୁ ଭୁଲନ୍ତ ନାମ କୃପା-ସାଗର ॥ ୧ ॥

ବାଘଚଦା ରୂପେ କର ବିହାର   ଦୁଇ ରତି ଧନେ ବରସ ମୋର
ବଣିକ ଧୋଇଣ   ସୁନା ନ ଚିହ୍ନିଲ
କାଏ ନେଲ ମୋ କଣ୍ଠି ପଥର ॥ ୨ ॥

ଦେଖାଅ ଚତୁର୍ଦ୍ଧା ମୂରତି ତୋର, ଦ୍ୱିଭୁଜେ ବଂଶୀ ନାହିଁ ମୋହର
ଇଚ୍ଛା ପୂର୍ଣ୍ଣ କର   ଇଚ୍ଛାପୁର ପାର
ବାଞ୍ଛାନିଧି ପର ନାମ ତୁମର ॥ ୩ ॥

ଘଟେବ ଅଭିରାମ ଲକ୍ଷ୍ମୀ-କୁମର   ଘସୁଅଛି କେବଳ ଭକତଜନ
ଲକ୍ଷ୍ମୀ ନାରାୟଣ   ମାତା ପିତା ଯା'ର
ତେବେ ସଂସାରେ ତା କାହାକୁ ଡର ? ॥ ୪ ॥

( ୪୨ )

ଜୟ ପତିତ-ପାବନ ହେ,   ସର୍ବ ଜୀବର ଜଗତେ ବନ୍ଦନା ।
ମାଆ ନାମ ଧରି ବାଆକୁ ଡାକିଲ ମାଆ କୃପାନେତ୍ରେ ଅନା ॥ଘୋଷା॥
ମାତା ପଦ୍ମା, ପିତା ପଦ୍ମ ଲୋଚନା, ଧ୍ୟାନ ଜ୍ଞାନ ସୂତେ ଡାକୁଛି ସିନା
ଯୁଗଳ ନକରି ବେଗଳ କରୁଛ,   ହଁରେ କରୁଛ ନାଁ ନାଁ ॥ ୧ ॥
ହଁରେ ହଁକୁ ନ କଲ ଏକ,   ତେଣୁ ଡାକୁଛି କି, ପଙ୍କଜମୁଖ ?
ହସ ହସ ହୋଇ ହଂସ ରଚିଥାଇ ନଇନ୍ତରେ ଏ ରସନା ॥ ୨ ॥

Digitized by PPRACHIN, SOA

ମୋର ହଂସ ଦେଲ ତୋର ହଂସକୁ,ପରହଂସ ଯାଉ ତା'ର ହଂହକୁ
ହଂସରେ ସୁହଂସ ରଖ, ହୃଷୀକେଶ ! ରଖ ବୋଲ ତୁଷ୍ଟ ପିନା ॥ ୪ ॥
ଅଭିରାମ ବୋଲ ନାମ ତୁମ୍ଭ ର        ଅଭିକୁ ଗମ ନ କର ଅନ୍ତର
ନନ୍ଦ ବସୁଦେବ ପରଯ୍ୟେ ବଡ଼ୁଛି ଆସି ଏତେବେଳେ ପିନା ॥ ୫ ॥

—()※()—

( ୪୨ )

କହ କମଳା ରମଣ ହେ,        ମୋତେ ଗ୍ଲାଣିଗଲ କାହିଁପାଇଁ ?
ଗ୍ଲତକ ମୁଖରେ ଘନ ନ ବର୍ଷିଲ ଗ୍ଲତକ କ ଚାତେ ଭିକ୍ଷ ।ଘୋଷା।
ମୁହିଁ ଅପରାଧୀ, ତୁମ୍ଭେ କୃପାନିଧି        କେ ଅବା କହିବ ନାହିଁ,
ମୁଁ ପିନା ଅନାଥ ତୁମ୍ଭେ ଦୟାକର ଆହେ ଭକ୍ତ ସଦଗ୍ରାହୀ ॥ ୧ ॥
ଜନମ ଜଠରୁ ଶରଣ ପଶିଛି        ତୁମ୍ଭ ପଦ୍ମପାଦେ ମୁହିଁ,
ଏଣୁ ଏ ଶରୀର ଅଟଇ ତୁମ୍ଭର ନ ଜାଣକି ପଦ୍ମସାଇଁ ॥ ୨ ॥
ଆଉ କହିବାକୁ କଥା କିଛି ନାହିଁ        ମୁହିଁ ତୁମ୍ଭର ଅଟଇ,
କହେ ଅଭିରାମ ତୁମର ବାହୁନେ ଢନ ମୋର ନ ସରଇ ॥ ୩ ॥



( ୪୩ )

ଜୟ ଜାନକୀ ଜୀବନ ହେ,        ନମସ୍ତେ ପ୍ରଭୁ ଶ୍ରୀରାମ !
ଭୃତ୍ୟ ସଦା ଅପରାଧୀ ହେବା ଯୋଗୁ ତେଣୁ ତୁମ୍ଭେ ଅଭିରାମ ॥ଘୋଷ॥
କର କରାଅ ଆପଣ ସବୁ ପିନା        କର୍ତ୍ତା ତ ଅଟ ଆପଣ ।
ସେବାକାରୀ ମନ ବଢ଼ିଲେ କି ହେବ ? ଏ ନୋହେ ପ୍ରଭୁ ଭୂଷଣ ॥ ୧ ॥
ଅଧ୍ୟଜଙ୍କ ରୂପେ ସକଳ ଜାଣୁଛ        ଆହେ ସଚ୍ଚିଦାନନ୍ଦପୂର୍ଣ୍ଣ !
ତାଆଇଁ ଶୋଇଲେ କିଏ ଉଠାଇବ ଆଧ୍ୟାତ୍ମିକ ସବୁଜାଣ ॥ ୨ ॥

Digitized by PPRACHIN, SOA

ତୁ ଯାହା ଦେଉଛୁ ମୁଁ ତାହା ନେଉଛି ଦୋଷୀ କେହ୍ନେ ତାସ ଜନ ?
ପାଜଗୋଟ୍ଟା ପରି ବୁଝିଲିଣି ଏବେ, କମଳା-ଚରଣ ଭରଣ ! ॥୩॥
ତୋତେ ଭୁଲିବ ଲକ୍ଷ, ତୋତେ ତୁ ନ ରକ୍ଷ, ଜୀବକୁ ମୋ ସମାଧାନ ।
ବଂଶ-ଚୂଡ଼ାକୁ ବିଶ୍ୱାସ ନ ଯାଏ, ଏକା ଅଛୁ ଅଭିଜ୍ଞ ॥୪॥
ଆହେ ବନମାଳୀ ଦେଲ ତୋତେ ଗାଳି କୋଳି ନ କରିବ ଛମ ।
ଗର୍ବ-ଗଞ୍ଜନ ନାମ ଯେଣୁ ବହୁଛ ଅଭିରାମ ଙ୍କାଇ ପ୍ରାଣ ॥୫॥



( ୪୪ )

ଆହେ ପ୍ରଭୁ ସୁଗ୍ରୀବ-ମିତ୍ର ! ତୋ ମାୟା ସଂସାର ବଡ଼ ବିଚିତ୍ର !
ଦେବଗଣଙ୍କୁ ଅମୃତ ଖୁଆଇଲ
ଦୈତ୍ୟେ ଭୁଲାଇଲ କରିଣ ମୂର୍ଖ (ଧୋଖା)
ସଦା ମନେ ଭାବୁଛି ମାତ୍ର କାହା ସଙ୍ଗେ ହେବ ସଙ୍ଗାତ
ସଂସାରେ କାହାକୁ ବିଶ୍ୱାସ ନ ପାଇ
ବନେ ବନେ ମୋର ହୋଇଛି ଯାତ୍ର ॥ ୧ ॥
ଇନ୍ଦୁ କୁମୁଦର ପୀରତି ଏ ଭାବେ ମୋ ନ ବଳେ ମତି
ନୀର-କ୍ଷୀର ଭାବ ଭାବିଲି କେବଳ
ହଂସ ବାରି ଦିଏ କଟିଣ ମନ୍ତ୍ର ॥ ୨ ॥
ମିତ୍ର ହେଲେ ଚନ୍ଦ୍ର ତପନ ଏ ଭାବେ ମୋ ନ ବଳେ ମନ
ଏଡ଼ିପରି ମିତ୍ର ହେବା ପାଇଁ ଭାବେ
ତେଣେ ହେଁ ବିଚ୍ଛେଦ ନୋହିବ ମାତ୍ର ॥ ୩ ॥

Digitized by PPRACHIN, SOA

ଘୃଣିଲ ଭକ୍ତ ଭଗବାନ          ଏ ଭାବେ ମୋ ବଳିଲା ମନ
ଗରଳ-ଭଞ୍ଜନ ନାମ କହୁବାରୁ ।
ସଂଶୟ କରେ ହେ ନଳିନ-ନେତ୍ର ! ॥ ୪ ॥

ଭକ୍ତ ଯଦି କରଇ ଦୋଷ          ପ୍ରଭୁ କ୍ଷମା କରନ୍ତି ଶେଷ ?
ମିତ୍ର ମହାଭକ୍ତ କଷ୍ଟ ନ ଗଣିଲ ।
ଏ କଥା ଶୁଣି ମୋ ଥରୁଛି ଗାତ୍ର ॥ ୫ ॥

ପ୍ରଭୁଙ୍କୁ ଦାସ ଯଉ ନନ୍ଦା          କରିଲେ ହେବ ବଡ଼ ଧନ୍ଦା
ମୋହର ଗର୍ବକୁ ତୁମ୍ଭେ ନେଲେ, ପ୍ରଭୁ ।
ତୁମ୍ଭେ ହେବ ଦାସ, ମୁଁ ପଦ୍ମନେତ୍ର ॥ ୬ ॥

ଏଣୁ ମୋହର ମିତ୍ର ତୁମ୍ଭ          ତୋହର ମିତ୍ର ମଧ୍ୟ ତୁମ୍ଭ
ଅଭିରାମ ମିତ୍ର ସତ୍ୟ ନାରାୟଣ
ବରଷି କଲ ଆଖି ଘଟସୂତ୍ର ॥ ୭ ॥

()*0*()

( ୪୫ )

ଆହେ ପ୍ରଭୁ କମଳାନାଥ !          ଭକତ ଭାବ ନମନ୍ତ ଇଙ୍ଗିତ
ପଣ୍ଡିତ ମାନଙ୍କୁ ଅସମ୍ଭବ ଅଟେ
ଭକତମାନଙ୍କୁ ଅମୃତ ଗୀତ ॥ ଘୋଷା ॥

ତୋର ମୋର ଏକଇ ଅଙ୍ଗ          ଖେଳ ଯୋଗେ ଯୁଗଳ ଅଙ୍ଗ
ଅର୍ଦ୍ଧେକ ପରମ ଅର୍ଦ୍ଧେ, ହେଲ ଜୀବ
ଜୀବର ଭାବନା ପରମ ମାନ ॥ ୧ ॥

Digitized by PPRACHIN, SOA

ତୁମ୍ଭେ ହେଲ ସାକ୍ଷୀ ସ୍ୱରୂପୀ, ଏଣୁ ତୁମ୍ଭେ ହେଲ ନିଷ୍ପାପୀ
କର୍ମ ସମୁଦ୍ରରେ ପେଲି ଦେଲ, ପ୍ରଭୁ !
ଜୀବର ଜୀବନ ଦୁଃଖୀ ସଜାଡ ॥ ୨ ॥
ଆହେ ପ୍ରଭୁ ଲକ୍ଷ୍ମୀ ରମଣ ! କଲେ ମୋତେ ଶକତି ଦାନ
ତେବେ ତୋ' ପାଦେ ମୁଁ ଶରଣ ପଶିବି
ଏକଥା ଜାଣ ଅଟଇ ସତ୍ୟ ॥ ୩ ॥
ମୋତେ ତୁ ନ ଭଜୁ କାହିଁକି ? ମୁଁ ତୋତେ ଭଜି ପାରଇକି ?
ତୁ ମୋତେ ଭଜିଲେ ମୁଁ ତୋତେ ଭଜିବି !
ମିଛେ ଭଣ୍ଡାଉଛୁ ଈଶ୍ୱର-ନାଥ ॥ ୪ ॥
କହଇ ବାଇ ଅଭିରାମ କହନ୍ତି ପ୍ରଭୁ ଅଭିରାମ
ଆଜ ଦିନେ, ପ୍ରଭୁ ! ନ କହିବ ତୁମ୍ଭ
ଏତିକି ସରିଯିବଟି ମହତ ॥ ୫ ॥



( ୪୭ )

ଜୟ ସଙ୍କଟ-ତାରିଣୀ ଗୋ ! ମୋର କାଳିଆକୁ ଦିଅ ଆଣି ।
କେଣେ ଲୁଚିଯାଇ ଅଛନ୍ତି ମୋ ସ୍ୱାମୀ ମୋତେ କରି ଦୋଷରୁଣୀ ॥
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ଥିଲେ ମଧ୍ୟ ତୁ ଜାଣିପାରୁ, ସର୍ବାଣୀ !
ତେଣୁ ଶ୍ରୀପଦକୁ ଲୟ ଲଗାଇଛି ଦିଅ ଦୁର୍ଗତି ନାଶିନୀ ! ॥ ୧ ॥
ତୋତେ କିପରି ସେବିବି ଆଗେ ମାତ,ତୋ ସେବା ନ ପାରେ ଜାଣି ।
ଆଗୋ ଭଗବତୀ ! ମନାଇବା ଶକ୍ତି ଦେଇ ନାହଁ ଠାକୁରାଣୀ ! ॥ ୨ ॥
କିଏ ମୋ ସ୍ୱାମୀଙ୍କୁ, ନେଇ ଲୁଚାଇଛି ଆଣି ଦିଅ ଗୋ ଜନନୀ !
ଅଭିରାମ ବାଇ ଏତିକି ମାଗଇ, ତୁମ ଇଚ୍ଛା ଗୋ ସର୍ବାଣୀ ! ॥ ୩ ॥

Digitized by PPRACHIN, SOA

( ୪୭ )

ଆହେ ମାୟାଧର !
କାୟା ନୁହଇଁ କି ତୁମ୍ଭର ?
ଅଜଣା ପରାୟେ ରହି   ଲଗାଉଛ ହୃଦର ॥ ଘୋଷା ॥
କଣ୍ଠ-ମର, କଣ୍ଠ-ଚର   ଆହେ ଶ୍ୟାମ-ସୁନ୍ଦର !
ଭକତ ଭାବରେ ତୁମ୍ଭେ   ଧରିଥିଲ ମନ୍ଦର ॥ ୧ ॥
ଭକ୍ତ ସଙ୍ଗେ ବନମାଳୀ !   କର କେତେ ହୃଦର !
କହେ ଅଭିରାମ   ତୁମ୍ଭ ଲୀଳା ଯାହା ତା'କର ॥ ୨ ॥



( ୪୮ )

କି ଧନ ତୁମ୍ଭଙ୍କୁ ଦେବି କି ? ପଙ୍କଜ-ଆଖି !
ଯେ ଧନ ଦେଇଛ ସେହି ଧନ ମୁଁ ଅଛି ରଖି ॥ ଘୋଷା ॥
ଆଜନ୍ମରୁ ମୁହିଁ ଚୋର   ଏବେ କି କଲ ଅନ୍ତର
ନଷ୍ଟ କର୍ମଫଳ ଏଥି ପରେ କଥା ଅଛି କି ॥ ୧ ॥
ଝୋଳା ଗୋଚରେ ରହିଛ   ଡାକ ଡାକ ନ ଶୁଣୁଛ
ଚୋରଛ-ନେତ୍ରରେ ଲୁହ ଲୁଚ ହସି ହସି କି ॥ ୨ ॥
ସେତେବେଳେ ବ୍ରଜପୁର   ମାଧବୀ ଲତା ଭିତର
ଯାହା କହିଥିଲ ତାହା ମନେ ଆଉ ଅଛି କି ? ॥ ୩ ॥
ଜାଣ ଶବର ଶରରେ   ଦେହ ଛାଡ଼ିଲ ଦ୍ୱାପରେ
ଏବେ ମାୟାଧର ଘଟେ ରହିଅଛ ଲୁଚି କି ॥ ୪ ॥
ଗୋପଗ୍ରେର ବୁଦ୍ଧି ଯେହ୍ନ   ଏଠାରେ ତୁମ୍ଭର ନାହିଁ
କ୍ଷୀର ସର ଲମାଖିଆ ଛଳ ରାଧାରମଣ କି ॥ ୫ ॥

Digitized by PPRACHIN, SOA

କହେ ଅଭିରାମ ଦାଇ ପୁଷ୍ପମାଳଟିଏ ନେଇ
ଗଳାରେ ଲମ୍ବାଇ ଦୁଃଖ ଯାଉ ଶ୍ରୀମୁଖ ଦେଖି ॥ ୭ ॥

—ଃଃ●ଃଃ—

କାହିଁ କୃପାକର, ହେ ପ୍ରାଣେଶ୍ୱର !
କୃପା କଲେ କୃପାମୟ ! ସରିଯିବ କ ଭଣ୍ଡାର ? ॥ଘୋଷା॥
ଆହେ ଅନାଥର ନାଥ ! ଭକତ ଜନର ମିତ୍ର,
ଭକତ ହିତରେ ଯୁଗେ ଯୁଗେ ହୁଅ ଅବତାର ॥ ୧ ॥
ଭକ୍ତ ପଦ ନାଶ ଯିବ, କାହାକୁ ଧରି ଖେଳିବ ?
ଭକ୍ତର ବାନ୍ଧବ, ଅଭକ୍ତର ତୁମ୍ଭେ ଦଣ୍ଡଧର ॥ ୨ ॥
କହେ ଅଭିରାମ ଦାସ, ଆସ ହେ ହୃଦୟ ପାଇଁ !
ତୁମ୍ଭେ ମୋର, ମୁଁ ତୁମ୍ଭର, ଏହି ମୋର ନିବେଦନ ॥ ୩ ॥

❊-❊-❊

( ୫୦ )

ଜୟ ଜଗତ ଜନନୀ ଗୋ !
(ତୋତେ) ଆଜ ଜଣାଇବ ନାହିଁ ।
ଯାହା ତୋତେ କହି ଜଣାଇ ଥାଆନ୍ତି ଏବେଠାରୁ ସରୁଛଇଁ [ଘୋଷା]
ତୋତେ କପାଇଁ ମୁଁ ନ ଜଣାଇବ ମା' - ତାହା ଏବେ କହୁଥାଇଁ
ଏ ଦେହଟି ପଦ ତୁମ୍ଭର ଅଟଇ, ଆଉ କ କଥା ଅଛଇ ॥୧॥
ନଦୀ ଜଳ ପଦ ସାଗରେ ମିଶଇ ମିଠା କ ଆଉ ରହଇ ?
ସେହିପରି ମୁହିଁ ତୁମ୍ଭର ଶରୀରେ ଲୀନ ହେଲି ମହାମାୟୀ ॥୨॥

Digitized by PPRACHIN, SOA

ଏ ଶରୀର ଯଦି ତୁମ୍ଭର ହୋଇଲା ମୋର ତ ଆଉ ନୁହଇଁ,
ମୋର ତ ତୁମ୍ଭର, ତୋର ଅଟେ ମୋର, ଏଥି ପରେ କଥା ନାହିଁ ॥୩॥
ମୁଁ ପ୍ରଣାମ କଲେ ତୁମ୍ଭେ କରୁଅଛ କାହାକୁ କରିବ କହ,
ତୁମ୍ଭଠାରୁ ଆଉ କିଏ ବଡ଼ ଅଛି କେବଳ ଭକତ ପ୍ରିୟ
ଆହେ ଭକ୍ତ ମିତ୍ର ଆହେ ପଦ୍ମନେତ୍ର ! ତୁମ୍ଭେ ମୋର ପ୍ରାଣସାଇଁ,
ତୁମ୍ଭର ଏ ଗାତ୍ର ଅପବିତ୍ର ଥିଲା ଏବେ ହିଁକି ହୋଇଛଇଁ ॥୪॥
ଏ ଅଙ୍ଗକୁ ଭୋଗ କର ହେ ଶ୍ରୀରଙ୍ଗ ! ଅନ୍ୟର ଭୋଗ୍ୟ ନୁହଇଁ,
ରମା ଅଧରରେ କାମ ନେଉଥାଅ, କହେ ଅଭିରାମ ବାଇ ॥୫॥



( ୪୧ )

ମନମୋହନ ହେ, ମୁଁ କି ତୁମ୍ଭର ନୁହଇଁ
ମୋର ଠାରେ ଯଦି କୃପା ନ କରିବ ଶରୀର ରଖିବି ନାହିଁ ॥ଘୋଷା॥
ଯେତେ ଯେତେ ମାୟା ଅଛଇ ତୁମ୍ଭର, ତେବେ ଗୋଚର ନୁହଇଁ,
ମନୁଷ୍ୟ ତ ମୁହିଁ, ଜାଣିବି ବା କାହିଁ ! ମାୟାଧର ପର ତୁହି ! ॥୧॥
ମୋତେ ଯେତେ ଭୋଗ ମିଳୁଛି ହେ ନାଥ ! ଭୋଗ୍ୟକର୍ତ୍ତା ମୁଁ ନୁହଇଁ,
ମୁହିଁ କର୍ମକର୍ତ୍ତା ତୁମ୍ଭେ ଫଳ ଭୋକ୍ତା, ଶ୍ରୀମୁଖରେ ଅଛି କହି ॥୨॥
ସେ ବଳୁ ଭୋଜନ ଶୟନାଦି କର୍ମ ବିଷ ପ୍ରାୟେ ମୁଁ ମଣଇ,
କେପରି ଦେଖିବି ପଦ୍ମ ନୟନଙ୍କୁ ଚିନ୍ତା ଅଟେ ମୋର ସେହି ॥୩॥
ଚନ୍ଦ୍ରାନନି ପଦ ଚିହ୍ନ ବସିଅଛି ସେତେ କି ଆସିବ ନାହିଁ ?
ବିଳମ୍ବ ହୋଇଲେ ଛାଡ଼ିବି ଜୀବନ କହେ ଅଭିରାମ ବାଇ ॥୪॥



Digitized by PPRACHIN, SOA

( ୫୨ )

କେତେ ଡାକିବ କାହ୍ନୁ କାହ୍ନୁ ବୋଲି ।
ପାଟେ ବସାଇ ଦେଲ ମୋତେ ପେଲି ॥ ଘୋଷା ॥

କରିଣ ଅପୂର୍ବ କୃପା ଭକତ କରିଲ କିମ୍ପା ?
ଏବେ ପଥକରେ ବୁଡ଼ାଇଲ ।
ଭକତ-ଭଞ୍ଜନ ନାମ ବହିଛ ଶୁଣିଛି କିମ୍ପା
ଏ ବେଳେ ଦେଖା ନ ଯାଉଛି ॥ ୧ ॥
ମୁଗ୍ଧୀ କୃଷ୍ଣା କରଣୀ କେତେ ତାରିଅଛ ପୁଣି
ଶ୍ୟାମ ହେ, ସତ୍ୟ କମ୍ପା ଖାଲି ?
ମୋତେ ନ ହେଲ ନାଟକ ଏ କ'ଣ ତୁମ୍ଭ ବିବେକ
କି ଦୋଷ ତୁମ୍ଭ ଠାରେ କଲି ॥ ୨ ॥
କାଏଁ ଅବା କାସ ଦେଲ ମୋ ଦେବା କି ନ ଅଣ୍ଟିଲା
ଭଣ୍ଡାଅ ମୋତେ 'କାଲି, କାଲି'
ତୁଣ୍ଡି ମ ବଜାଅ ନାଥ ! ପୂରିବ ମନୋରଥ
ବାଛେ କି ନଣ୍ଡରେ ମାଇଲି ॥ ୩ ॥

—※—

( ୫୩ )

କୃଷ୍ଣ ହେ କୃପା ବରଷା କର,
ତୁମ୍ଭ ପଦ୍ମ-ପାଦେ ଭରସା ମୋର ॥ ଘୋଷା ॥
ତୁମ୍ଭ କୃଷିରେ ହେଉଛୁ ମରୁଡ଼ି, କୃପା ବୃଷ୍ଟି ବିନା ଯାଉଛୁ ଜଳି
ଆପଣ ଯବ ହୋଇବେ ଜମ୍ବୁଳ ।
ନିନ୍ଦା ହୋଇବ କି ଆପଣଙ୍କର ହେ ॥ ୧ ॥

Digitized by PPRACHIN, SOA

ପ୍ରଥମେ ମରୁଡ଼ି ଦୁର୍ଭିକ୍ଷେ ଯୋଉ, ସେ ଭୂମିକୁ ଚଷା ପଶୁରେ ନାହିଁ
ଫାଳ ଭୂମିର କି ଅଟେ ଦୋଷର ?
ଦୈବ୍ୟ ଚକ୍ରେ ପ୍ରଭୁ ! ବିଗୁଣ କର ହେ ॥ ୨ ॥
ଗୃହକ ଭୂମିରେ, ଘନ ଶୂନ୍ୟରେ, ଗ୍ରାହକ ରହିଛୁ ଘନ ଧ୍ୟାନରେ
ଶ୍ୟାମ ଘନ ବୃଷ୍ଟି ପଡ଼ ନ କରି,
ଗ୍ରାହକ ମରିଲେ ନିନ୍ଦା କାହାର ହେ ॥ ୩ ॥
ତୁମ୍ଭେ ବା ବୋଲିବ ନିନ୍ଦା ପ୍ରଶଂସା; ଏ ଦୁଇରେ ନାହିଁ ମୋହର ଆଶା
ତୁମ୍ଭର ନଥିଲେ ନାହିଁ ମୋହର
ନିନ୍ଦା ପ୍ରଶଂସା ହୋଇବ କାହାର ହେ ॥ ୪ ॥
ତୋ କୃପାଦୃଷ୍ଟିରେ ହୋଇଲେ ଶସ୍ୟ, ତୁମ୍ଭେ ବିନା ସବୁ କରିବ ଗ୍ରାସ
ନିମିତ୍ତ-ମାତ୍ର ମୁଁ ଅଟେ ତୁମ୍ଭର,
କର୍ମ ବିନା ମୋର ଫଳ ତୁମ୍ଭର ହେ ॥ ୫ ॥
ଅଭିମାନ କହେ ହେ ନାରାୟଣ ! ମୁଁ କହିବାକୁ କି ଇଚ୍ଛିତ ମଣ ?
ମୋର ଇଚ୍ଛା ନାହିଁ, ଇଚ୍ଛା ତୁମ୍ଭର
ତୁମ୍ଭେ ସାମନ୍ତ ମୁଁ ସେବକ ତୋର ହେ ॥ ୬ ॥



( ୫୪ )

ଜୟ ଜୟ ସିଦ୍ଧେଶ୍ୱର ଜଗତ ପିତା !
ଜୟ ଜୟ ନାରାୟଣ ଜଗତଜନତା ! ॥ ଘୋଷା ॥
ଜୟ ପରମ ଆନନ୍ଦ ! ଜୟ ଜୟ ସଦାନନ୍ଦ !
ଭବ-ବନୋଦଧି ପଦ୍ମାଳୟା ଯା'କାନ୍ତ ।

Digitized by PPRACHIN, SOA

ସର୍ବ ଘଟେ ରହିଥାଅ    ପ୍ରାଣ ରୂପେ ଜଡ଼ିଥାଅ
ବାମେ ଲକ୍ଷ୍ମୀ ଜାହାଣରେ ତୁ ବନ୍ଦବନ୍ଦ୍ୟା ॥ ୧ ॥
ହ୍ରୀଁକାର ଶ୍ରୀଁକାର ଧେନ    ରହିଛ ତାର ଜନନୀ
ଚନ୍ଦ୍ର ସୂର୍ଯ୍ୟ ତୁମ୍ଭ ପାଦେ ଗଳ ମୁକ୍ତା ।
କହେ ଅଭିରାମ ବାଇ    ହ୍ରୀଁ ସଦାନନ୍ଦ ହୋଇ
ଶ୍ରୀଁ ହୋଇଛନ୍ତି ଲକ୍ଷ୍ମୀ ଜଗତମାତା ॥ ୨ ॥



( ୪୫ )

ଜୟ ଶକ୍ତି-ପାଦମା ଲୋ    କୃପାମୟୀ ନାରାୟଣୀ
ଅଦ୍ୱୈତ ମନ୍ତ୍ରରେ ସୃଜନ କରିଲୁ ତୁ ଚରା ସର୍ବ ସହିଣୀ ॥ ଘୋଷା ॥
ଏକ ନନ୍ଦନରେ ସ୍ନେହ କରୁଥିଲୁ    ଆଗୋ ସତ୍ୟନାରାୟଣୀ
ବହୁ ପୁତ୍ର ସେଣୁ ଜନମ କରିଲୁ ଏତେକୁ ପାଦେପାରୁ ପୁଣି ॥ ୧ ॥
ତୁମ୍ଭେ ମୋତେ ପଦ୍ମ କୋଟିଏ ନ ଧରିବ ହେ ମାତ ଶତ ରତନଙ୍କ
ଆଜ ନାଏ ଅଛି ଜାହାକୁ ଜନ୍ମିବ ଜନ୍ମ ବିଷ୍ଣୁ ଚାଟରାଣୀ ॥ ୨ ॥
କୃପାମୟୀ ଅନୁଗ୍ରହ କରିବ ବୋଲି ସୁରଣରେ ମାଙ୍ଗି ସ୍ତୁତି,
ପୁତ୍ର ଅବା ପଦ୍ମ କଷ୍ଟ ଦୋଷ କଲେ ସହନ୍ତି ସର୍ବ ଜନନୀ ॥ ୩ ॥
ଏଣୁ ହୃଷ୍ଟମନ ହୋଇ ଅଭିରାମ କହିଛି ଶବା ଉକର,
ନାରାୟଣ ଲୋକେ ତୁମ୍ଭେ କହିଥିଲେ ଆହା କ ମିଠା ଶିରଣି ।



( ୪୬ )

ବାଳି ହରଚଣ୍ଡୀ ! ତୋତେ ସରିଲେ ବଞ୍ଚିଛି ଯାଏ ଝଣ୍ଟି ॥ ଘୋଷା ॥

Digitized by PPRACHIN, SOA

ସର୍ବ-ଘଟେ ପୂର୍ଣ ହୋଇଅଛ, ଧବଳାଙ୍ଗୀ ହୋଇ କହୁଅଛ
ତୁମ୍ଭ ହୃଦୟରେ ମୂର୍ଖ କହେ ବେଦ
ପ୍ରଭୁ-ଅଭକ୍ତଙ୍କୁ ଦେଲ ଭଣ୍ଡି ॥ ୧ ॥

ପତିତ-ପାବନୀ ଦୟାମୟୀ ! ସଙ୍କଟତାରଣୀ କୃପାମୟୀ !
ଘୋର ସଙ୍କଟ ଆସି ଏବେ ପଡ଼ିଲା
ଏ ସଙ୍କଟୁ ଉଦ୍ଧର ରାମଚଣ୍ଡୀ ॥ ୨ ॥

ମୈଷାସୁର ଦୈତ୍ୟ କଲ ନାଶ ମର୍ତ୍ତ୍ୟପୁରେ ରହିଗଲା ଯଶ
ରକ୍ତ ବୀର୍ଯ୍ୟ ଆଦି ସକଳ ବିନାଶି
ନାମ ବହିଅଛ ଉଗ୍ରଚଣ୍ଡୀ ॥ ୩ ॥

ଉଗ୍ରମୂର୍ତ୍ତି-ଉଗ୍ର ପରଚଣ୍ଡା ହସ୍ତେ ଧରୁ ବିକଟାଳ ଖଣ୍ଡା
ଶ୍ରୀକୃଷ୍ଣ ଭକ୍ତଙ୍କୁ ଅଶାନ୍ତ ଘୋଟାଇ
ଅଭକ୍ତଙ୍କୁ କରୁ ଖଣ୍ଡି ଖଣ୍ଡି ॥ ୪ ॥

କହଇ ବାଇଆ ଅଭିରାମ ପିତା ହର, ମାତା ଚଣ୍ଡୀ ନାମ
ତୁମ୍ଭର କୋଳରେ ବସାଇଣ, ମାତା !
ଭବଭୟକୁ ତୁ ଦେବୁ ଖଣ୍ଡି ॥ ୫ ॥



( ୫୭ )

କୃଷ୍ଣ ହେ, ପାଦପଦ୍ମ ବଢାଅ
ତୁଂଭର ଭକତି ବିଦ୍ୟା ପଢାଅ ॥ ଘୋଷା ॥

ଅପୂର୍ବ ପଦ୍ମ ଦେଖିଣ ଭ୍ରମର, ଗୁଣୁ ଗୁଣୁ ଶବ୍ଦେ କରେ ଝଙ୍କାର
ଫୁଟା ପଦ୍ମ ଦେଇ ମନ ଛଡ଼ାଅ, କାମ୍ୟାଦି ରିପୁଙ୍କୁ ବେଗେ ବଡ଼ାଅ ॥୧॥

Digitized by PPRACHIN, SOA

ଅଭିରାମ କହେ ହେ ନାରାୟଣ,      କୃପା ବୀଜ ତୁମ୍ଭ ଭୂମିରେ ବୁଣ
ତୁମ୍ଭର କୃଷିରେ ମୋତେ ଚଢ଼ାଅ
ତୁମ୍ଭ ପ୍ରେମ ସ୍ରବେ ମୋତେ ବୁଡ଼ାଅ ॥ ୨ ॥

❊❊❊

କୃଷ୍ଣ ହେ, ତୁମ୍ଭେ ନରକେଶରୀ
କେ ଜାଣି ପାରିବ ମାୟା ତୁମ୍ଭର (ଘୋଷା)
ଡ଼ାହାଣୀ ରୂପରେ ତୁମ୍ଭେ ଖାଉଛ
ଗୁଣିଆ ରୂପରେ ତୁମ୍ଭେ ଝାଡ଼ୁଛ
ସର୍ବ ଘଟରେ ତୁମ୍ଭେ ଅଛ ପୂରି
ଅନ୍ତ ନ ପାଏ ବ୍ରହ୍ମା ତ୍ରିପୁରାରି ॥ ୧ ॥
ଏକଣ ତୋଳପ ତକାଇ ଦେଇଛ
ଗୃହ କଞ୍ଚିକ ହସ୍ତରେ ଧରିଛ
ମୁଁ ଅବା କ କବାଟ ଖୋଲି ପାରି
ଘର ଭାଙ୍ଗିବ କଷ୍ଟେ ତୋପ ମାରି ॥୨॥
ଶ୍ରବ କହଇ ଅଭିରାମ ବାଇ
ବୁଡ଼ିଲେ ମୋ ହସ୍ତରେ କଛି ନାହିଁ
ଯାହା କରଅ ତାହା ହୋଇ ପାରି
ଏ ସୂତ୍ରେ ଆଇକ ପାସ୍ ମୋହର ।୩।

❊ ● ❊

( ୫୯ )

କାହିଁ ଅଛ ହେ ଶ୍ରୀହରି ସାରଙ୍ଗଧାରୀ ?
ଭକ୍ତଙ୍କ ନେଇ ସମାଗି ହୃଦବଦ୍ଧାରୀ । (ଘୋଷା)

Digitized by PPRACHIN, SOA

ଆହେ ପ୍ରଭୁ ! ଦେଖା ଦିଅ    ମୋରେ ସଦା ତୁମ୍ଭ ସ୍ନେହ
ତୁମ୍ଭେ ସବୁ ଭକ୍ତ ପ୍ରିୟ, ନରକେଶରୀ ! ॥ ୧ ॥

କାହୁଁ ପାଷାଣ ତୁଣ୍ଡରେ    ଫଟିକ ନିଜ ଗଢରେ
କି ଅବା ନର-ଘଟରେ କୁଞ୍ଜ ବିହାରୀ ॥ ୨ ॥

ଶୂନ୍ୟ ଶୂନ୍ୟ ମହାଶୂନ୍ୟ    କି ଅବା ପଞ୍ଚ ଭୂତେଣ
ରହିଅଛ ନାରାୟଣ, କେଉଁଠି ଧୀର ॥ ୩ ॥

କିବା ଏକବଂଶ ପୁରେ    କି ଅବା ପୁର ଉପରେ
କିବା ରୂପ ଅରୂପରେ, ବ୍ରଜ ବିହାରୀ ! ॥ ୪ ॥

ଡାକେ ଦାଶ ଅଭିରାମ    ଦୟାଳ ଦିଅ ଦର୍ଶନ
ତୋର ବିନା ଯିବେ ପ୍ରାଣ ନାହିଁ ମୋହର ! ॥ ୫ ॥



( ୬୦ )

ମୁଁ ଅବା ନ ଦେଇ ଏ ଚିନ୍ତା ତ ତୋର ଆଦ୍ୟରୁ ଅସ୍ତ ହୋଇଛି
ତେଜ ଭଣିବାକୁ ଦୁଇ ଖଣ୍ଡ ହେଲୁ ନ ଜାଣି କି ନାଥ ବାଣି ॥ ୧ ॥
କର୍ତ୍ତୃକ ଅନ୍ତର୍ଯାମୀ ଖଣ୍ଡେ ହେଲୁ କାମୀ ନିଷ୍କାମୀ ଅଧୀନ ସ୍ୱାମୀ ।
ଚିନ୍ତାଦାନ ବୋଲି ଯାହାକୁ ବୋଲନ୍ତି କର୍ମଫଳ ନିଅ ସ୍ୱାମୀ ! ॥ ୨ ॥
କର୍ମଫଳ ବୋଲି ଯାହା ମୁଁ କହୁଛି ଯାହା ଦେଇଥିଲ ଅଇ
ଅରୂପାନନ୍ଦଟି ରୂପରେ ପ୍ରକାଶି ଅଭିରାମ ନାଥ ଶାଏ ॥ ୩ ॥

( ୬୧ )

ଜୀବ ବ୍ରହ୍ମ ଜଣାଉଛି    ପରଂବ୍ରହ୍ମ ପାଦାବ୍ଜରେ,
ଯେବେ ଜ୍ଞାନ ହେଲେ ଜୀବ ଥାଏ ତୋ ପଦ ରଜରେ (ଘୋଷା)

Digitized by PPRACHIN, SOA

ତୋଠାରେ ଅଭେଦ ମୋର — ଥାଏ ମୁଁ ସଦା ଭେଦର
ଚିନ୍ତା ବର୍ଣ୍ଣନେ ଭଜର — କୃପଣ ମୁହିଁ କୃପାରେ ॥୧॥
ବେ କହୁଛୁ ତତ୍ତ୍ୱ ମସି — କେ କହେ ଅହଂ ବ୍ରହ୍ମୋଽସ୍ମି
ଏ ଟିକ ପଦ ବା ମୁହିଁ — ସବତା ଭୂମ୍ନ ମୂଠାରେ ॥୨॥
ତୁ ଅଟୁ ମହା ତପନ — ମୁହିଁ କଣିକା ସମାନ
କଣିକା କି ହେବ ବହ୍ନି ? — ରୋଷ କରୁଛ କା'ଠାରେ ॥୩॥
ଆପଣ ଅଟ ସରିତ — ମୁହିଁ ଜଳ କଣା ମାତ୍ର
ଜଳ ଛଡ଼ା ଅନ୍ୟ କିଛି — କେବେ କି ମୁଁ ହୋଇପାରେ ?
ତୁ ଅଟୁ ବିଭୁ ଚୈତନ୍ୟ — ମୁଁ ଅଟେ ଅଣୁ ଚୈତନ୍ୟ
ଏଣୁ ମୁଁ ଆବଦ୍ଧ ଅଛି — ସର୍ବଦା ଅପଣ୍ଡ ଘରେ ॥୫॥
ଅପଣ୍ଡ ସଙ୍ଗରେ ମାତି — ପୁଷ୍ପାଉଛି ଧନ ସ୍ୱଣ୍ଡ
ଷଟଶ ବଟେ ପୀଡନ୍ତି — କରନ୍ତି ଏଗାର ସରେ ॥୬॥
ଜୀବ ବ୍ରହ୍ମ ନାମ ଯେଣୁ — ମୋତେ ଦେଉଛନ୍ତି ତେଣୁ
ନଜାଣି କି ପରଂବ୍ରହ୍ମ — ଆତ୍ମର ଏକ ପଣ୍ଡରେ ॥୭॥
ଯେତେ କହିଲେ ବୁଝାଇ — ଏମାନେ ବୁଝନ୍ତି ନାହିଁ
ଧିଅ ତାଙ୍କୁ ସଦଗତି — ଲଜ୍ଜାରୁ ଉଦ୍ଧର ବାରେ ॥୮॥
ଭୂମ୍ନ ଆନନ୍ଦାନୁଭୂତି — ଅପର୍ଣ୍ଣଏ ପଦ୍ଧ ପା'ନ୍ତି
ମିଶିଯାନ୍ତା ଅଭିରାମ — ରାଧାଙ୍କ ଭାବତରଙ୍ଗିରେ ॥୯॥



( ୬୨ )

ଜୀବ ଆତ୍ମା କଣାଉଛି — ପରମାତ୍ମାଙ୍କ ପଦରେ
ଝାନବନ୍ଧୁ ! ମୋ ଗୁହାରି — ଯେନ ପରମ ସାଦରେ (ଘୋଷା

Digitized by PPRACHIN, SOA

ଅରୂପାନନ୍ଦ ପୁରୁଷ କିମ୍ପା ହେଲ ହୃଦଗତ ?
ନିତ୍ୟ ଶୁଦ୍ଧ ନିରଞ୍ଜନ ବର୍ଣ୍ଣନା ଅଛି ବେଦରେ ॥ ୧ ॥
ଅରୂପରୁ ରୂପ ହୋଇ ଆସ ଖେଳିବାର ପାଇଁ,
ନୋହିଲେ ଜାଣନ୍ତେ କିଏ ତୁମ୍ଭଙ୍କୁ ଏହି ସଂସାରେ ? ॥ ୨ ॥
ତୁମ୍ଭ ମନୋହର ରୂପ ଦେଖି ମୁଁ ସାଜିଲି ରୂପ,
ଖେଳିବାକୁ ତୁମ୍ଭ ସଙ୍ଗେ ପଶିଛି ଭୁବନରେ ॥ ୩ ॥
ତୁମ୍ଭେ ହେଣୁ କଲ ଘର ଦେଖିଗଲେ ମୋର ଘର
ଦୁଃଖ ସୁଖେ ରଖାଇଲେ ଅପର ଜାଣି ବାସରେ ॥ ୪ ॥
ମୁହିଁ ମଧ୍ୟ ରୂପାନ୍ତର ଜନ୍ମ ମୃତ୍ୟୁ ରୁ ଅନ୍ତର
ଭ୍ରମରେ ଜରା ବ୍ୟାଧିକି ନିତ୍ୟ ନିମନ୍ତ୍ରଣ କରେ ॥ ୫ ॥
ସ୍ୱାମୀ ହେଣୁ କଲେ ଦୂର ସୌଭାଗ୍ୟ କାହିଁ ନାଗର ?
ଚକ୍ଷୁ ଛନା ହେଉ ନାହିଁ କ୍ଷଣ ବିଗ୍ରହନ୍ତୁ ଥରେ ॥ ୬ ॥
ଯେ ଯେତେ ନିଅନ୍ତୁ ଟିକି, ଅନ୍ୟର ମୁହିଁ ହେବ କି ?
ଯହିଁ ତହିଁ ରହ, କ୍ଷଣ ନଷ୍ଟପୁ ଖୋଜିବ ଥରେ ॥ ୭ ॥
ନୟନାଭିରାମ ! ଆସ କ୍ଷମା କର ଦାସୀ ଦୋଷ
ହୃଦ କୁମୁଦମା ଫୁଟୁ ଶଶୀ ଦେଖି ଆନନ୍ଦରେ ॥ ୮ ॥

( ୭୩ )

ଜୟ ବନ୍ଦେଶ୍ୱରୀ ! ସର୍ବ ଘଟରେ ରହିଛ ତୁମ୍ଭେ ମୂଳ (ଘୋଷା)
ସତ୍ୟେ ଭଗବତୀ ତୁମ୍ଭ ନାମ, ନୃସିଂହଙ୍କୁ କରିଥିଲ ଜନ୍ମ
ମହିଁଷାସୁର ଦୈତ୍ୟ କରିଲ ନିପାତ
ଯଶ ରହିଗଲ ମର୍ତ୍ତ୍ୟପୁରେ ॥ ୧ ॥

Digitized by PPRACHIN, SOA

ଷୋଳ ଦଳରେ ତୁ ଧବଳାଙ୍ଗୀ　　ଚନ୍ଦ୍ରହୁ କଣ୍ଠ ଚନ୍ଦ୍ରକୁ ଜିଣି
ତୁମ୍ଭ ସ୍ତବଦ୍ୱାରେ　　ମୂର୍ଖ କହେ ବେଦ
ଧନ୍ୟ ତୋ ମହିମା, ମାହେଶ୍ୱରୀ ! ॥ ୨ ॥

ଦ୍ୱାଦଶ ଦଳେ ତୋ ଲକ୍ଷ୍ମୀ ନାମ　　ନାରାୟଣଙ୍କର ପ୍ରାଣଧନ
ଛପ୍ପନକୋଟି ଯାଦବ　　ପଡ଼ି ବାଣ୍ଟି ଦିଅ
ତୁଟନ୍ତୁ ପାପ, ମାତ ସିଦ୍ଧେଶ୍ୱରୀ ! ॥ ୩ ॥

ଦଶ ଦଳରେ ତୁ ସାବିତ୍ରୀ　　କମଳାସନଙ୍କ ମନୋହାରୀ
କର ମୋତେ କୃପା　　ଜୟ ତୁ ଅରୂପା
ଷଠ ଦଳେ ନାମ ଷଣ୍ଡ ତୋର ॥ ୪ ॥

ଚାରି ଦଳେ ନାମ ବଜ୍ରତୁଣ୍ଡୀ　　ଦ୍ୱିଦଳେ ନାମ ତୋ ଆଦ୍ୟ ଚଣ୍ଡୀ
ଆଦ୍ୟେ ହେଲୁ ଜନ୍ମ　　ତେଣୁ ଆଦ୍ୟ ନାମ
ଆଦ୍ୟେ କୃପା କର ଘଟେଶ୍ୱରୀ ॥ ୫ ॥

ପତିତ-ପାବନୀ କୃପାମୟୀ !　　ମୁଁ ପର ତୋର ପୁଅ ଅଟଇ
କହେ ଅଭିରାମ　　ତୁମ୍ଭ ସ୍ତବଦ୍ୱାରେ
ଯର୍ଦ୍ଧ୍ରୀ ଟିବ ନ ଆସିବ ହାରେ ॥ ୬ ॥

❊ ❊ ❊

( ୬୪ )

ଜୟ ନୀଳକଣ୍ଠେଶ୍ୱର　　ଭୀଷଣ ମୂରତି ହେ,
ଜୟ ଶଶାଙ୍କ-ମଣ୍ଡନ !　　ପାର୍ବତୀଙ୍କ ପତି ହେ (ଘୋଷା)
ସିନ୍ଧୁ ହୋଇଲା ମନ୍ଥନ　　ବିଷ ହୋଇଲା ଉତ୍ପନ୍ନ
ଆତଙ୍କରେ ସର୍ବଦେବ କଲେ ପର ସ୍ତୁତି ହେ ॥ ୧ ॥

Digitized by PPRACHIN, SOA

ଦେବଙ୍କ ଦେଖି ଆତଙ୍କ ସଜେ କଲ ସୁତନାଙ୍କ !
କାଳକୂଟ ବିଷ ଭକ୍ଷି ଉଦ୍ଧରିଲ କ୍ଷିତି ହେ ॥ ୨ ॥
କାଳକୂଟ କଲ ପାନ କଣ୍ଠ ହେଲେ ନୀଳବର୍ଣ୍ଣ
ତେଣୁ ନୀଳକଣ୍ଠ ନାମ ତବ ଉମାପତି ହେ ॥ ୩ ॥
ମୃତ୍ୟୁକୁ କରିଲ ଜୟ ତେଣୁ ନାମ ମୃତ୍ୟୁଞ୍ଜୟ
ଅଷ୍ଟାଙ୍ଗ ଯୋଗରେ ତବ ରହିଲ କୀରତି ହେ ॥ ୪ ॥
ସୁଦୟା ନେତ୍ରରେ ଚାହଁ । ପ୍ରଭୁ କାତ୍ୟାୟନୀ ନାଥ !
ତୁମ୍ଭ କୃପା ହେଲେ କାହାକୁ ମୋ ଅବା ଖାତି ହେ ॥ ୫ ॥
କହେ ବାଇ ଅଭିରାମ ଆହେ ସୁଧାଂଶୁ ବଦନ !
ପାଶୁପତ ଶରେ ଛେଦ ମୋହର ପ୍ରକୃତି ହେ ॥ ୬ ॥

— ❊ —

( ୬୫ )

ଜୟ ଭୁଜଙ୍ଗମାଳିଆ ହେ
ମୋର କାଳିଆ କେବେ ମିଳିବ

ଆହେ କୃତ୍ତିବାସ ! ମୋହର ମାନସ
ସତେ କି ପୂର୍ଣ୍ଣ କରିବ ? ॥ ଘୋଷା ॥
ତୁମ୍ଭଙ୍କୁ ସେବଣ ଷୋଳ ସହସ୍ର ଗୋପୀ
ପାଇଥିଲେ ବାସୁଦେବ,
ମୋହର କର୍ମକୁ ହେ କୃପା ସାଗର
ଶୁଷ୍କ ଯେପରି ନୋହିବ ॥ ୧ ॥
କହର ତୁମ୍ଭଙ୍କୁ ମନାଇବି ପ୍ରଭୁ !
ନାହିଁ ମୋର ଭକ୍ତିଭାବ,
କେବଳ ସୁଦୟା କର ହେ ପ୍ରଭୁବର !
କାଳିଆକୁ ଦେଖାଇବ ॥ ୨ ॥

Digitized by PPRACHIN, SOA

କହେ ଅଭିରାମ ଜମା ମହେଶ୍ୱର
ଏତିକ ମାଗ କରିବ,
ତୁମର ଦାସୀକୁ ମାତା ପିତା ନେଇ
ସ୍ୱାମୀଙ୍କୁ ଦେଖାଇ ଦେବ ॥ ୩ ॥



( ୭୨ )

ସଚ୍ଚିଦାନନ୍ଦ, ତୁମ୍ଭ ପାଦେ ରଖ
ହେ ଚନ୍ଦ୍ର ମୁଖ ! ॥ ଘୋଷା ॥

ଯେତେ ମୋ ଜଣାଣ ଏଥିଠାରୁ ପୂର୍ଣ୍ଣ
ଅଧିକ କହିବା ବୃଥା ପରିଶ୍ରମ,
ନ ଜାଣକ ତୁମ୍ଭେ କ କହିବି ଏବେ ?
ତୁମର ପାଦେ ସବୁ ସୁଖ ହେ ॥ ୧ ॥

ଏ ମାୟା-ସଂସାର ତୁମ୍ଭ ଖେଳ ଘର
ନିର୍ମାୟା ଗୋବିନ୍ଦ ! କମ୍ପା ମାୟାକର ?
କହେ ଅଭିରାମ ସଚ୍ଚିଦାନନ୍ଦ !
ତୁମର ଘର ତୁମ୍ଭେ ରଖ,
ହେ ଚନ୍ଦ୍ର ମୁଖ ॥ ୨ ॥



Digitized by PPRACHIN, SOA

